# ଚାଟ ଇଚ୍ଛାବଳୀ



କବି ବନମାଲୀ ଦାସ

# ଚାଟ ଇଚ୍ଛାବତୀ

( ପ୍ରାଚୀନ କାବ୍ୟ )

କବି—**ବନମାଳୀ ଦାସ**

ସମ୍ପାଦକ

**ଶ୍ରୀ କେଦାରନାଥ ମହାପାତ୍ର**

ଓଡ଼ିଶା ରାଜ୍ୟ ସଂଗ୍ରହାଳୟ

ସଂରକ୍ଷକ,

ଭୁବନେଶ୍ୱର

**ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗ**

ଦ୍ୱାରା

ପ୍ରକାଶିତ

୧୯୬୧

ମୂଲ୍ୟ ଟ୦.୭୫ ନୂ: ପ:

# CHATA - ICHHAVATI

**( AnOld Oriya Kavya )**

BY

***Poet Banamali Das***


Edited by :—

**Sri K. N. Mahapatra,** B.A.(Hons)D.Ed.

Curator,

*Orissa State Museum, Bhubaneswar.*



*Published by :—*

**The Education Department**

GOVERNMENT OF ORISSA

**1961.**

Price Rs. 0.75 N.P.

# ଭୂମିକା

ଉତ୍କଳର ପ୍ରାଚୀନ ଲୋକପ୍ରିୟ କାବ୍ୟସମୂହ ମଧ୍ୟରେ କବି ବନମାଳୀ ଦାସଙ୍କ **'ଚଟଇଚ୍ଛାବତୀ'** ଅନ୍ୟତମ । ଏକ ସମୟରେ ସମଗ୍ର ଓଡ଼ିଆଭାଷାଭାଷୀ ଅଞ୍ଚଳରେ ଏହା ବିଶେଷ ଆଦୃତ ଓ ପ୍ରଚାର ଲାଭ କରିଥିବାରୁ ତାଳପତ୍ର ପୋଥି ଆକାରରେ ଏ କାବ୍ୟର ପାଣ୍ଡୁଲିପି ଅନେକ ସ୍ଥାନରେ ଉପଲବ୍ଧ ହୁଏ । କିନ୍ତୁ ଦୁଃଖର ବିଷୟ ଏ ପର୍ଯ୍ୟନ୍ତ ଏ ଜନପ୍ରିୟ ରଚନାଟି ଲୋକ ଲୋଚନର ଅଗୋଚରରେ ରହିଥିଲା । ବର୍ତ୍ତମାନ ଭାରତ ସରକାରଙ୍କ 'ଆଧୁନିକ ଭାରତୀୟ ଭାଷାସମୂହର ଅଭିବୃଦ୍ଧି' ଯୋଜନା ଅନୁଯାୟୀ ଅନ୍ୟ [illegible] ପ୍ରାଚୀନ କାବ୍ୟ ସମେତ ଉକ୍ତ ଗ୍ରନ୍ଥଟି କେନ୍ଦ୍ର ତଥା ରାଜ୍ୟ ସରକାରଙ୍କ ଅର୍ଥ ସାହାଯ୍ୟରେ ମୁଦ୍ରିତ ଓ ପ୍ରକାଶିତ ହେଉଅଛି । ମୁଖ୍ୟତଃ ଭୁବନେଶ୍ୱରସ୍ଥିତ ରାଜ୍ୟ ସରକାରଙ୍କ ମିଉଜିୟମ୍ (ସଂଗ୍ରହାଳୟ) ର ପୋଥି-ଭଣ୍ଡାରରେ ସଂରକ୍ଷିତ ପୋଥି ପାଠ ଅବଲମ୍ବନରେ ଏହାର ମୁଦ୍ରଣ କାର୍ଯ୍ୟ ସମ୍ପନ୍ନ ହୋଇଅଛି ଏବଂ ପାଠ ମିଳାଇବା ପାଇଁ ଭଦ୍ରକ ଅଞ୍ଚଳରୁ ପ୍ରାପ୍ତ ଅନ୍ୟ ଖଣ୍ଡିଏ ପୋଥିର ସାହାଯ୍ୟ ସ୍ଥାନେ ସ୍ଥାନେ ନିଆ ଯାଇଛି ।

'ଚଟଇଚ୍ଛାବତୀ' କାବ୍ୟଟି ପ୍ରାଚୀନ ଓଡ଼ିଆ ସାହିତ୍ୟ ଭଣ୍ଡାରର ଏକ ସମୁଜ୍ଜ୍ୱଳ ରତ୍ନ ହେଲେ ମଧ୍ୟ ଏହା ସମ୍ପର୍କରେ ଏ ପର୍ଯ୍ୟନ୍ତ ବିଶେଷ ଆଲୋଚନା ହୋଇ ନଥିଲା । ପଣ୍ଡିତ ଶ୍ରୀ ବିନାୟକ ମିଶ୍ର ୧୯୨୮ରେ ପ୍ରକାଶିତ ସ୍ୱୀୟ ଓଡ଼ିଆ ସାହିତ୍ୟର ଇତିହାସ

(ପୃ: ୦--୭ )ରେ ପ୍ରଥମେ ଏହାର ଏକ ଅତି ସଂକ୍ଷିପ୍ତ ବିବରଣୀ ମାଧ୍ୟ ପ୍ରଦାନ କରିଥିଲେ । ତେଣୁ ଏହା ସମ୍ପର୍କରେ ମୋର ସହକାରୀ ପଣ୍ଡିତ ଶ୍ରୀ ମାଳମଣି ମିଶ୍ର ସାହିତ୍ୟାଚାର୍ଯ୍ୟଙ୍କ ଦ୍ୱାରା ପ୍ରକାଶିତ ପ୍ରବନ୍ଧ-ଦ୍ୱୟ ଉଲ୍ଲେଖଯୋଗ୍ୟ (୧) ଉକ୍ତ ଗ୍ରନ୍ଥ ସମ୍ପର୍କୀୟ ଆଲୋଚନାରେ ଉପ ଦୁଇଟିରୁ ବିଶେଷ ସାହାଯ୍ୟ ନିଆଯାଇ ଥିବାରୁ ମୁଁ ତାଙ୍କଠାରେ କୃତଜ୍ଞ ।

**କବି ବନମାଳୀଙ୍କ ସମୟ ନିରୂପଣ**—କବି ବନମାଳୀଙ୍କ ସମୟ ଅଭ୍ରାନ୍ତ ଭାବରେ ନିର୍ଦ୍ଧାରଣ କରିବା ପାଇଁ ଏ ପର୍ଯ୍ୟନ୍ତ ଯଥେଷ୍ଟ ବିଶ୍ୱାସଯୋଗ୍ୟ ଉପାଦାନ ମିଳିନାହିଁ । ତେଣୁ କେତେକ ପରୋକ୍ଷ ପ୍ରମାଣ ବଳରେ ଏହାର କାଳ ନିର୍ଣ୍ଣୟ କରାଯାଇଛି । ସୁଲଳିତ ପଦ୍ୟାବଳୀ ପ୍ରଣେତା ଭକ୍ତକବି ବନମାଳୀ ଦାସ ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରେ ଖୋର୍ଦ୍ଧା ରାଜା ବୀରକେଶରୀ ଦେବଙ୍କ ରାଜତ୍ୱ କାଳରେ ଆବିର୍ଭୂତ ହୋଇଥିବା ତାଙ୍କର କେତେକ ପଦ୍ୟ ପାଠରୁ ଜଣାଯାଏ । (୨) କିନ୍ତୁ 'ଗୂଢ଼ଇଚ୍ଛାବତୀ' କାବ୍ୟ ପ୍ରଣେତା ବନମାଳୀ ଦାସ ପଦ୍ୟାବଳୀ ରଚୟିତା ବନମାଳୀଙ୍କ ଠାରୁ ଭିନ୍ନ ଓ ପ୍ରାଚୀନତର । କାରଣ ଘୁମୁସର ଭଞ୍ଜ ବଂଶର ପ୍ରଖ୍ୟାତ ରାଜକବି କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ ପିତାମହ ଧନଞ୍ଜୟ ଭଞ୍ଜଙ୍କ 'ଇଚ୍ଛାବତୀ' କାବ୍ୟଟି ବନମାଳୀ ଦାସଙ୍କ 'ଗୂଢ଼ଇଚ୍ଛାବତୀ'

---

୧ । (କ) 'ଗୂଢ଼ଇଚ୍ଛାବତୀର କବି ବନମାଳୀ ଦାସ' ନବରବି, ୩ୟ ବର୍ଷ ୫ମ ସଂଖ୍ୟା ।

(ଖ) "ଇଚ୍ଛାବତୀ କାବ୍ୟ ଓ ନୃପ ଧନଞ୍ଜୟ ଭଞ୍ଜ ।" „ „ ୨ୟ ସଂଖ୍ୟା

୨ । ଅରୁଣୋଦୟ ପୁସ୍ତକାଳୟ ପ୍ରକାଶିତ ବନମାଳୀ ପଦ୍ୟାବଳୀ ପୃଷ୍ଠା ୧୨, ୨୩୧, ୧୮୨, ୧୩୩ ।

ତଥା 'ଚୌରପଞ୍ଚାଶତ', 'ଉତ୍ତରପଞ୍ଚାଶତ' ଓ 'ବାଙ୍କେଣୀପୁ ଚରିତ', ଅବଲମ୍ବନରେ ରଚିତ ହୋଇଥିବାର ପ୍ରମାଣ ଉପଲବ୍ଧ ହୁଏ । (୧) ଧନଞ୍ଜୟ ଭଞ୍ଜ ୧୦୭୨ରୁ ୧୬୦୧ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ତାଙ୍କ ରାଜତ୍ୱ ବେଳକୁ ବନମାଳୀ ଦାସଙ୍କ 'ଶୃଙ୍ଗାର ଇଚ୍ଛାବତୀ' କାବ୍ୟ ସୁଧୀ ସମାଜରେ ବିଶେଷ ଆଦର ଓ ପ୍ରାଧାନ୍ୟ ଲାଭ କରିଥିବାରୁ ଏହା ତାଙ୍କ ରାଜତ୍ୱର ଅନ୍ତତଃ ୫୦ ବର୍ଷ ପୂର୍ବରୁ ରଚିତ ହୋଇଥିବାର ଅନୁମାନ କରାଯାଇପାରେ । ତେଣୁ ସେ ଷୋଡ଼ଶ ଶତାବ୍ଦୀର ଶେଷ ଭାଗରେ ଆବିର୍ଭୂତ ହୋଇଥିବାର ସ୍ଥିର କରାଯାଇପାରେ ।

ଦିବାକର ଦାସ ପ୍ରଣୀତ 'ଜଗନ୍ନାଥ ଚରିତାମୃତ' ଗ୍ରନ୍ଥରେ 'ବନମାଳୀ ଦାସ' ନାମକ ଜଗନ୍ନାଥ ଦାସଙ୍କ ଜନୈକ ଶିଷ୍ୟଙ୍କ ଉଲ୍ଲେଖ ଦେଖାଯାଏ । ଯଥା—

(କ) ଯେ "**ବନମାଳୀ ଦାସ** ସ୍ୱାମୀ,ମଦନ ସୁନ୍ଦର ଯେ ନାମୀ"
(ପୃ ୩)

(ଖ) "ଶ୍ରୀ ବନମାଳୀ ଯେ ଗୋସାଇଁ ଭକ୍ତି ସାଧନ କଲେ ସେହି
ମଧ୍ୟରେ ସର୍ବେ ଯେ ବୋଲନ୍ତି, ଅଂଶେ ବନମାଳୀ ହୋଇଛି"
(ପୃ ୩୦)

ପୁଣି ରଘୁନନ୍ଦନ ପାଠାଗାରରେ ଥିବା 'ଗୁରୁପ୍ରଣାଳୀ' ନାମକ ଗ୍ରନ୍ଥରେ ମଧ୍ୟ ବନମାଳୀ ଜଗନ୍ନାଥଙ୍କ ଶିଷ୍ୟରୂପେ ବର୍ଣ୍ଣିତ ହୋଇଛନ୍ତି । ଯଥା—

---

୩ । ଓଡ଼ିଶା ସାହିତ୍ୟ ଏକାଡେମୀର ସଂପାଦକ ଅଧ୍ୟାପକ ଶ୍ରୀ ଗୌରୀ କୁମାର ବ୍ରହ୍ମାଙ୍କ ଦ୍ୱାରା ସଂପାଦିତ 'ଇଚ୍ଛାବତୀ' କାବ୍ୟର ମୁଖବନ୍ଧ ଦ୍ରଷ୍ଟବ୍ୟ ।

।

"ମହାକବି ଜଗନ୍ନାଥ ଦାସ ସୁତ୍ର ପଶଗୃରକଃ,
ବନମାଳୀ ତତ୍‌ଶିଷ୍ୟାଭୂତ୍ କେଳୀକୃଷ୍ଣ ସ୍ତୁତଃ ପରମ୍"

କୃଷ୍ଣଚନ୍ଦ୍ରାବଳୀ ରଚୟିତାଙ୍କୁ ଜଗନ୍ନାଥ ଦାସଙ୍କ ଶିଷ୍ୟ ବନମାଳୀଙ୍କ ଠାରୁ ଅଭିନ୍ନ ବୋଲି ଧରାଗଲେ ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗରେ ତାଙ୍କର ଆବିର୍ଭାବ ଘଟିଥିବା ନିର୍ଣ୍ଣୟ କରାଯାଇପାରେ । କିନ୍ତୁ ଏହାକୁ ଅଭ୍ରାନ୍ତ ବୋଲି ଗ୍ରହଣ କରିବା ସୁଦୃଢ଼ ପ୍ରମାଣ ସାପେକ୍ଷ ।

ଏ ସମ୍ପର୍କରେ ଅନ୍ୟ ଏକ ବିଷୟର ଅବତାରଣା କରାଯାଇପାରେ । ତିନି ଖଣ୍ଡରେ ବିଭକ୍ତ ଏକ ବିରାଟ ରାସ ଗ୍ରନ୍ଥ ଜନୈକ ଶିଶୁ ବନମାଳୀ ଦାସଙ୍କ ଦ୍ୱାରା ରଚିତ । ମୁଁ କଳାହାଣ୍ଡି ହୁନ୍ଦାଳନ୍ତ୍ର ବିଭାଗର ଚାଳକ ଥିବା ସମୟରେ ୧୯୫୫ ମସିହାରେ ଏହି ତିନିଖଣ୍ଡ ରାସ ପୋଥି ଗୋଟିଏ କନ୍ଧ.ଗାଁରୁ ସଂଗ୍ରହ କରିଥିଲି । ତୃତୀୟ ଖଣ୍ଡ ପୋଥି ଶେଷରେ ନକଲକାର ନିମ୍ନୋକ୍ତ-ମତେ ଲେଖିଛନ୍ତି । "ଟୁନିପା ଗାଁରେ ମଦନ ଦୁଆନ ଉମନ ଠାକୁର ବସ୍ତିତେଷୁ ମାଘ ଅମିସା ବୁଧବାରେ ପ୍ରଜାପତି ସମ୍ବତ୍ସର ସଙ୍ଗଦୁକେ ଶ୍ରୀ ବନମାଳୀ ରାସ ସମ୍ପୂର୍ଣ୍ଣ ।

ଶ୍ରୀ ରାଧାକୃଷ୍ଣ ଶିଶୁ ବନମାଳୀ ଉଚ୍ଚରିବେ ମୋତେ ।
ଶ୍ରୀ ଜଗନ୍ନାଥ ଚରଣ ଥାଉ ମୋର ଚିତ୍ତେ ।
ଶ୍ରୀ ଜଗତି ପତି ମମ ରକ୍ଷରୁ ୧୬୦୭ ସମ୍ବତ୍"

ଜ୍ୟୋତିଷ ଗଣନାନୁସାରେ ପୋଥି ନକଲର ଶେଷ ତାରିଖ ହେଉଛି ୧୭-୨-୧୬୮୩ (୦) କିନ୍ତୁ ସେ ବର୍ଷ ୧୬୦୭ ଶକାବ୍ଦ ସମ୍ବତ୍

(4) An Indian Ephemeris, vol. VI. p. 168.

ନ ହୋଇ ୧୬୦୫ ହୋଇଥିଲା । ବୋଧହୁଏ ଲିପିକାରଙ୍କ ଅଜ୍ଞତା-ଯୋଗୁଁ ଶକାବ୍ଦ ଗଣନାରେ ଏପରି ସାମାନ୍ୟ ବର୍ଷକର ପାର୍ଥକ୍ୟ ରହିଛି । ଉକ୍ତ ଗ୍ରନ୍ଥରେ ସେ ନିଜକୁ ଅନେକସ୍ଥ ଶିଶୁ ବନମାଳୀ ବୋଲି ଉଲ୍ଲେଖ କରିଛନ୍ତି । ଯଥା —

ଶିଶୁ ବନମାଳୀ ମୁଁ ଶରଣ ଜଗନ୍ନାଥ
(ପ୍ରଥମ ଖଣ୍ଡ ନକଲ ୨୧ ପୃଷ୍ଠା)
ସ୍ମରଣ ପାଦନ୍ଦ ଶିଶୁ ବନମାଳୀ ଦାସ । ,, ୭୨ ପୃଷ୍ଠା)

ଏଠାରେ ଶିଶୁ ପଦର ବ୍ୟବହାର ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପ୍ରଥମ ଓଡ଼ିଆ କାବ୍ୟ ପ୍ରଣେତା ଅର୍ଜୁନ ଦାସ, 'ଉଷାଭିଳାଷ'ର କବି ଶଙ୍କର ଦାସ, 'ଶଶିସେଣା'ର ରଚୟିତା ପ୍ରତାପ ରାୟ ମଧ୍ୟ 'ଶିଶୁ' ଆଖ୍ୟା ଗ୍ରହଣ କରିଛନ୍ତି । କିମ୍ବଦନ୍ତୀ ଅନୁସାରେ ଉତ୍କଳର ସୁପ୍ରସିଦ୍ଧ 'ପଞ୍ଚସଖା' ମଧ୍ୟରେ ଏକତମ ଅନନ୍ତ ଦାସ ଶିଶୁ ସମ୍ପ୍ରଦାୟର ପ୍ରତିଷ୍ଠାତା । ତାହା ହେଲେ ରାଧ ପ୍ରଣେତା ବନମାଳୀଙ୍କୁ ଅନ୍ତର୍ବର୍ତ୍ତୀ କଣ୍ଠେମାନଙ୍କ ଶିଷ୍ୟରୂପେ ଗ୍ରହଣ କରିବା ଯୁକ୍ତିସଙ୍ଗତ ନୁହେଁ । ଶିଶୁ ବନମାଳୀଙ୍କ ସମୟ ଏ ପର୍ଯ୍ୟନ୍ତ ଅଜ୍ଞାତ । ତଥାପି ଦୁର୍ଗମ ପର୍ବତ-ମାଳା ବେଷ୍ଟିତ ଓ ଘନ ଅରଣ୍ୟାନୀ ଆଚ୍ଛାଦିତ କଳାହାଣ୍ଡି ରାଜ୍ୟର ଛୁରିପା ଗାଁରେ ୧୬୦୫ରେ ବନମାଳୀ ରାସ ନକଲ ହୋଇଥିବାର ଅଭ୍ରାନ୍ତ ପ୍ରମାଣ ମିଳୁଥିବାରୁ, କବିଙ୍କୁ ସପ୍ତଦଶ ଶତାବ୍ଦୀର ପ୍ରଥମ ଦଶକ ବା ଷୋଡ଼ଶ ଶତାବ୍ଦୀର ଶେଷ ଭାଗରେ ଅବସ୍ଥାପିତ କରାଯାଇପାରେ । ଭକ୍ତିରଙ୍ଗଛାନ୍ଦ ପ୍ରଣେତା ବନମାଳୀ ଓ ରାସ ପ୍ରଣେତା ଶିଶୁ ବନମାଳୀ ପ୍ରାୟ ସମସାମୟିକ ହୋଇଥିଲେ ମଧ୍ୟ ଉଭୟଙ୍କ ଏକତ୍ୱ ବା ଅଭିନ୍ନତ୍ୱ ପ୍ରତିପାଦନ ଅନେକ ଗବେଷଣା ସାପେକ୍ଷ । ତେଣୁ ଏ ସମ୍ପର୍କରେ କୌଣସି ଅନୁମାନ ଉପରେ ନିର୍ଭର ନ କରି 'ଭକ୍ତିରଙ୍ଗଛାନ୍ଦ'ର ପ୍ରଣେତା ବନମାଳୀ ଦାସଙ୍କୁ ଅନ୍ତତଃ

ସପ୍ତଦଶ ଶତାବ୍ଦୀର ପ୍ରାକ୍କାଳରେ ଅବତୀର୍ଣ୍ଣ ହୋଇଥିବାର ବର୍ତ୍ତମାନ ନିଃସନ୍ଦେହରେ ସ୍ଥିର କରାଯାଇପାରେ । ଏ ସମ୍ପର୍କରେ ଅଧିକ ବିଶ୍ୱାସଯୋଗ୍ୟ ତଥ୍ୟ ମିଳିଲେ ତାଙ୍କର ଆବିର୍ଭାବକାଳ ଆଉ କେତେକ ବର୍ଷ ପୂର୍ବକୁ ଘୁଞ୍ଚି ଯାଇପାରେ ।

**ବିଷୟବସ୍ତୁ** - 'ବୃହତ ଇଚ୍ଛାବତୀ' କାବ୍ୟର ସାହିତ୍ୟିକ ମୂଲ୍ୟ ନିରୂପଣ କରିବା ପୂର୍ବରୁ ଏହାର ବିଷୟବସ୍ତୁ ଜାଣିବା ଆବଶ୍ୟକ । ତେଣୁ ଏହାର ସାରକଥା ଅତି ସଂକ୍ଷିପ୍ତ ଭାବରେ ନିମ୍ନରେ ପ୍ରଦାନ କରାଗଲା ।

'ଦ୍ରାପକ (ଦର୍ପକ) ଦେଶର ରାଜା ମଦନବ୍ରହ୍ମ ନିଜ ପୁତ୍ର ବୃହୁବ୍ରହ୍ମଙ୍କର ବିବାହ ନିମିତ୍ତ ଅନେକ ଦେଶରୁ ରାଜକୁମାରୀଙ୍କ ଚିତ୍ରପଟ ଆଣାଇଲେ । କିନ୍ତୁ କୌଣସି ଚିତ୍ରପଟ ପ୍ରତି ବୃହୁବ୍ରହ୍ମ ଆଗ୍ରହ ପ୍ରକାଶ ନ କଲାରୁ ରାଜା ମଦନବ୍ରହ୍ମ ମହା ବିରକ୍ତ ହୋଇ ପୁତ୍ର ବୃହୁବ୍ରହ୍ମଙ୍କୁ ରାଜ୍ୟରୁ ବହିଷ୍କାର କରିଦେଲେ । ରାଜକୁମାର ମନ ଦୁଃଖରେ ନିଜ ରାଜ୍ୟରୁ କିଛିଦୂର ଅତିକ୍ରମ କରି 'ସୁବର୍ଣ୍ଣରେଖା' ନଦୀରେ ସ୍ନାନକରି ଭୋଜନଗରପତିଙ୍କ ରାଜ୍ୟରେ ଉପସ୍ଥିତ ହେଲା । ରାଜସିଂହଦ୍ୱାରରେ କରୁଣାକର ନାମରେ ଜଣେ ବ୍ରାହ୍ମଣ ଚଟଶାଳୀ କରି ରାଜକୁମାରୀ ଇଚ୍ଛାବତୀଙ୍କୁ ପାଠ ପଢ଼ାଉଥିଲେ । ରାଜକୁମାର ଗୁରୁଙ୍କଠାରେ ନିଜକୁ ପିତୃମାତୃହୀନ ବୋଲି ପରିଚୟ କରନ୍ତେ, ଗୁରୁ ତାକୁ ଧର୍ମପୁତ୍ର ରୂପେ ସ୍ୱଗୃହରେ ରଖାଇଲେ । ପର ଦିନଠାରୁ ଗୁରୁଙ୍କ ସହିତ ବୃହୁବ୍ରହ୍ମ ଆସି ରାଜକୁମାରୀ ଇଚ୍ଛାବତୀ ସହିତ ବିଦ୍ୟା ଅଧ୍ୟୟନ କଲା ।

ରାଜକୁମାରୀ ବୃହୁବ୍ରହ୍ମର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ପାଠ ପଢ଼ାରେ ମନ ନ ଦେଇ ସର୍ବଦା ଅନ୍ୟମନସ୍କା ହେଲା ।

ଚନ୍ଦ୍ରବ୍ରହ୍ମ ମଧ୍ୟ ଇଚ୍ଛାବଶରେ ରୂପରେ ବିମୁଗ୍ଧ ହୋଇ କୁମାରୀର ସୌନ୍ଦର୍ଯ୍ୟ ଅବଲୋକନରେ ସମସ୍ତ କଟାଇଲେ । କିଛି ଦିନ ପରେ କୁମାରୀ ଗୁରୁଦେବଙ୍କଠାରୁ ଚନ୍ଦ୍ରବ୍ରହ୍ମର ପୂର୍ଣ୍ଣ ପରିଚୟ ପାଇଲା । ତା'ପରେ ଦୁହିଁଙ୍କ ମଧ୍ୟରେ ଘନିଷ୍ଠତା ଉତ୍ତରୋତ୍ତର ବୃଦ୍ଧି ଲାଭକଲା । ଦିନେ କୁମାରୀର ଖଡ଼ ଗଛଯାଏଁ ସେ ଦରିଦ୍ରାସ ଦେଶରେ ଚନ୍ଦ୍ରବ୍ରହ୍ମକୁ ଖଡ଼ ଆଣି ଦେବାଲାଗି ଅନୁରୋଧ କଲା । ଚନ୍ଦ୍ରବ୍ରହ୍ମ ରାଜକୁମାରୀକୁ ତିନିବାର ସତ୍ୟ କରାଇ ତା'ର ଖଡ଼ ଆଣି ଦେଲା ।

ଦିନେ ଗୁରୁଶାଳୀରେ ଚନ୍ଦ୍ରବ୍ରହ୍ମକୁ ଏକାନ୍ତରେ ବସିବାର ଦେଖି ଖଡ଼ ଆଣି ଦେଲାବେଳେ ସତ୍ୟ କରାଇବାର ଉଦ୍ଦେଶ୍ୟ ବିଷୟରେ ରାଜକୁମାରୀ ଜିଜ୍ଞାସା କଲା । ଚନ୍ଦ୍ର କୁମାର ମୁଁ ତୁମକୁ ପତ୍ନୀରୂପେ ପାଇବାକୁ ଚାହେଁ' ବୋଲି ଜଣାନ୍ତେ ଇଚ୍ଛାବତୀ ଅତି ଆନନ୍ଦିତ ହୋଇ ସେଥିରେ ସମ୍ମତି ଦାନ ପୂର୍ବକ ଆତ୍ମସମର୍ପଣ କଲା ।

ଗଚ୍ଛେଶ ପୂଜା ଦିନ ଗୁରୁ ଫୁଲ ତୋଳି ଆଣିବାଲାଗି ଚନ୍ଦ୍ରବ୍ରହ୍ମକୁ ଆଦେଶ ଦେଲେ, କିନ୍ତୁ ରାଜକୁମାରୀ ମଧ୍ୟ ଚନ୍ଦ୍ରବ୍ରହ୍ମ 'ସଙ୍ଗରେ ଯିବାକୁ ଅନୁମତି ମାଗିଲା । ଗୁରୁଙ୍କ ଆଜ୍ଞା ପାଇ ଦୁହେଁ ପୁଷ୍ପୋଦ୍ୟାନରେ ପ୍ରବେଶ କଲେ । କିନ୍ତୁ ଚନ୍ଦ୍ରବ୍ରହ୍ମ ପୁଷ୍ପଚୟନରେ ମନ ନ ଦେଇ କେବଳ ରାଜକୁମାରୀର ମୁଖକମଳ ସନ୍ଦର୍ଶନରେ ମନ ଦେଲା । ରାଜକୁମାରୀ ଚମ୍ପକ ବୃକ୍ଷରେ ଆରୋହଣ କରି ପୁଷ୍ପଚୟନ କରିବା ସମୟରେ ପବନ ବେଗରେ ତା'ର ବକ୍ଷଦେଶରୁ ବସ୍ତ୍ରାଞ୍ଚଳ ଖସିଗଲା । ଚନ୍ଦ୍ରବ୍ରହ୍ମ ନବଯୌବନା ରାଜକୁମାରୀର ବକ୍ଷେର ଶୋଭା ଦେଖି ମଦନ ବାଣରେ ପୀଡ଼ିତ ହୋଇ ମୂର୍ଚ୍ଛିତ ହୋଇଗଲା । ରାଜକୁମାରୀ ବୃକ୍ଷରୁ ଓହ୍ଲାଇ ଜଳସିଞ୍ଚି ଚନ୍ଦ୍ରବ୍ରହ୍ମକୁ ସଚେତ କରାଇ ମୂର୍ଚ୍ଛିତ ହେବାର କାରଣ ଜାଣି ଆଲିଙ୍ଗନ ଚୁମ୍ବନ ଓ ରତିଦାନରେ

ସୃଷ୍ଟିବ୍ରହ୍ମଙ୍କୁ ଆନନ୍ଦିତ କରାଇଲା । ଦୁହେଁ ସୁସ୍ଥ ହୋଇ ବିଦ୍ୟାଳୟରେ ଉପସ୍ଥିତ ହେଲେ । ଗୁରୁ ଉଭୟଙ୍କ ମୁଖମଣ୍ଡଳ ଦେଖି ମନେ ମନେ ସନ୍ଦେହ କରି ପରଦିନଠାରୁ ସୃଷ୍ଟିବ୍ରହ୍ମଙ୍କୁ ବିଦ୍ୟାଳୟକୁ ଆସିବା ଲାଗି ବାରଣ କଲେ ।

ଇଚ୍ଛାବତୀ ମଧ୍ୟ ସୃଷ୍ଟିବ୍ରହ୍ମ ବିରହରେ ବିଦ୍ୟାଳୟ ପରିତ୍ୟାଗ କରି କନ୍ୟାନ୍ତଃପୁରରେ ଭୋଜନ ପରିତ୍ୟାଗ ପୂର୍ବକ ବିରହ ଜ୍ୱାଳାରେ ଦଗ୍‌ଧ ହେଲା । ପରିଶେଷରେ ଅମୁବତୀ ନାମ୍ନୀ ସଖୀ ରାଜକୁମାରୀର ମନୋବେଦନା ଜାଣି ଗୁରୁ ଗୃହରୁ ସୃଷ୍ଟିବ୍ରହ୍ମଙ୍କୁ ଆଣି ଅତି ଗୋପନରେ କନ୍ୟାନ୍ତଃପୁରରେ ପ୍ରବେଶ କରାଇଲା । ରାଜା କନ୍ୟାନ୍ତଃପୁରରେ ଚୋର ପଶିଥିବା ଶୁଣି, ଦୋସାଧିଙ୍କୁ ଚୋର ଧରିବା ଲାଗି କଠୋର ଆଦେଶ ଦେଲେ । ଦୋସାଧି ମଦନା ନାମ୍ନୀ ଜଣେ ମୂଦୁଲୀ ସାହାଯ୍ୟରେ ସୃଷ୍ଟିବ୍ରହ୍ମଙ୍କୁ ଧରି ରାଜାଙ୍କ ସମ୍ମୁଖରେ ଉପସ୍ଥିତ କରାଇଲା । ରାଜା ସୃଷ୍ଟିବ୍ରହ୍ମର ସୌନ୍ଦର୍ଯ୍ୟ ଦେଖି ନିଜ କନ୍ୟାର ଉପଯୁକ୍ତପାତ୍ର ବୋଲି ମନେ ମନେ ସ୍ଥିର କଲେ ଓ ତାହାର ପ୍ରେମ ପରୀକ୍ଷା ନିମିତ୍ତ ଦୋସାଧିଙ୍କୁ ଗୋପନରେ ସବୁ କଥା ବୁଝାଇ ଦେଲେ କହି ବଧଭୂମିରେ ବଧ କରିବାର ଏକ ପ୍ରହସନ ଆରମ୍ଭ କରିବା ନିମିତ୍ତ ଆଦେଶ ଦେଲେ ।

ଦୋସାଧି ରାଜକୁମାରଙ୍କୁ ବଧଭୂମିକୁ ନିଅନ୍ତେ ଇଚ୍ଛାବତୀ କେଶବାସ ଅସମ୍ଭାଳ ହୋଇ ସେଠାରେ ପହଞ୍ଚି ସୃଷ୍ଟିବ୍ରହ୍ମ ସହିତ ନିଜକୁ ହତ୍ୟା କରିବା ଲାଗି ଦୋସାଧିଙ୍କୁ ଅନୁରୋଧ କଲା । ଇତ୍ୟବସରରେ ଜଣେ ବେତାଳ ସେଠାରେ ଉପସ୍ଥିତ ହୋଇ ଭୋଜରାଜାଙ୍କ ନିକଟରେ ସୃଷ୍ଟିବ୍ରହ୍ମର ପ୍ରକୃତ ପରିଚୟ ଦିଅନ୍ତେ ରାଜା ସେହି ବଧ ପ୍ରହସନ ବନ୍ଦ କରାଇ ରାଜକୁମାର ସୃଷ୍ଟିବ୍ରହ୍ମ ସହିତ

ଇଚ୍ଛାବତୀର ବିବାହ କରାଇ ଦେଲେ । ଦୁହେଁ ଭୋଜ ରାଜ୍ୟରେ କିଛୁଦିନ ରହି ପରେ ନିଜ ରାଜ୍ୟକୁ ପ୍ରତ୍ୟାବର୍ତ୍ତନ କଲେ ।"

## ଇଚ୍ଛାବତୀ ଓ ଗୁପ୍ତ ଇଚ୍ଛାବତୀ:—

'ଇଚ୍ଛାବତୀ' ଓ 'ଗୁପ୍ତ ଇଚ୍ଛାବତୀ'ର ବିଷୟବସ୍ତୁ ଆଲୋଚନା କଲେ ଜଣାପଡେ ଯେ କବି ବନମାଳୀ କାବ୍ୟଟିକୁ ଅଧିକ ସରସ ସୁନ୍ଦର ଓ ପ୍ରାସଙ୍ଗିକ କରିବା ପାଇଁ ସମସ୍ତ ପ୍ରକାର ପ୍ରୟାସ କରିଛନ୍ତି । ଧନଞ୍ଜୟଙ୍କ ନାୟକ ନାୟିକା (ମଧୁକର ଓ ଇଚ୍ଛାବତୀ) ଇନ୍ଦ୍ରଙ୍କ ଦ୍ୱାରା ଅଭିଶାପ ଗ୍ରସ୍ତ ହୋଇ ପୃଥିବୀରେ ଜନ୍ମ ଗ୍ରହଣ କରିଥିଲେ; କିନ୍ତୁ ବନମାଳୀଙ୍କ ନାୟକ ନାୟିକା (କୃଷ୍ଣଚନ୍ଦ୍ର ଓ ଇଚ୍ଛାବତୀ) ରାଜକୁମାର ରାଜକୁମାରୀ ଭାବେ ଜନ୍ମଲାଭ କରିଥିଲେ । ଧନଞ୍ଜୟଙ୍କ ବର୍ଣ୍ଣିତ ନାୟକ ନାରଦଙ୍କ ଠାରୁ ନିଜର ପୂର୍ବ ଜନ୍ମର ଶାପ ବୃତ୍ତାନ୍ତ ଶୁଣି ପିତା ମାତାଙ୍କ ଅଜ୍ଞାତରେ ଗୃହ ପରିତ୍ୟାଗ କରି କପାଳୀ ମଠକୁ ଗମନ କଲେ । କିନ୍ତୁ ବନମାଳୀଙ୍କ ନାୟକ ପିତାଙ୍କ ଦ୍ୱାରା ବିତାଡିତ ହୋଇ ଭୋଜ ନଗରରେ ଉପସ୍ଥିତ ହୋଇଥିଲେ । କବି ବନମାଳୀ ସ୍ୱକାବ୍ୟର ନାୟକ ନାୟିକାଙ୍କର ପ୍ରଥମ ଦର୍ଶନରେ ଉଭୟଙ୍କର ଉଭୟଙ୍କ ପ୍ରତି ପ୍ରେମ ଜାଗ୍ରତ ହୋଇଥିବାର ବର୍ଣ୍ଣନା କରିଥିବା ସ୍ଥଳେ, ଧନଞ୍ଜୟ କେବଳ ନାୟକର ଅନୁରାଗ ବର୍ଣ୍ଣନା କରି ନୀରବ ରହିଛନ୍ତି । ଅଳଙ୍କାର ଶାସ୍ତ୍ରରେ ପ୍ରଥମେ ନାୟିକାର ଅନୁରାଗ, ପରେ ନାୟିକାର ଇଙ୍ଗିତରେ ନାୟକର ଅନୁରାଗାଦ ଜାତ ହେବାର ନିୟମ ରହିଛି ।

"ଆଦୌ ବାଚ୍ୟଃ ସ୍ତ୍ରିୟାରାଗଃ ପୁଂସଃପାଶ୍ଚାତ୍ତଦଙ୍ଗିତୈଃ ।।"

[ସାହିତ୍ୟ ଦର୍ପଣ]

ସେହି ପରମ୍ପରା ଅନୁସାରେ କବି ବନମାଳୀ ସବୁ ସ୍ଥଳରେ ସ୍ୱକୀୟା ନାୟିକାର ଅନୁରାଗ ବିଶେଷ ଭାବରେ ଦେଖାଇଛନ୍ତି । କିନ୍ତୁ କବି ଧନଞ୍ଜୟ ଅଳଙ୍କାର ଶାସ୍ତ୍ରର ନିୟମ ପ୍ରତି ଆଦୌ ଦୃଷ୍ଟି ନ ଦେଇ ସ୍ୱକୀୟାରେ ବର୍ଣ୍ଣିତ ନାୟକକୁ ଏକ ଚରିତ୍ରହୀନ, ଦୁର୍ବଳ ଓ କାମାସକ୍ତ ପୁରୁଷ ଭଳି ବର୍ଣ୍ଣନା କରିଛନ୍ତି ।

କବି ବନମାଳୀଙ୍କ ନାୟକ ପୁଷ୍ପୋଦ୍ୟାନରେ ନାୟିକାର ସ୍ତନଜଘନର ଶୋଭା ସନ୍ଦର୍ଶନ ଦ୍ୱାରା କାମବାଣରେ ପୀଡ଼ିତ ହୋଇ ମୋହଗ୍ରସ୍ତ ହେବା ଓ ନାୟିକା ଦ୍ୱାରା ସଚେତ ହୋଇ ତାର ଇଙ୍ଗିତରେ ରତିକ୍ରୀଡ଼ା କରିବା ଯେତେ ପ୍ରାସଙ୍ଗିକ; ଧନଞ୍ଜୟଙ୍କ ନାୟକ ପୁଷ୍ପୋଦ୍ୟାନରେ ନାୟିକାର ଗୋପନୀୟ ଅଙ୍ଗଶୋଭା ଦେଖି କେବଳ ନାୟିକାଠାରୁ ଗୋଟିଏ ବରଣମାଳା ଲାଭକରି ନିଭୃତ କାନନକୁ ଫେରିବା ସେତିକି ଅପ୍ରାସଙ୍ଗିକ ପରି ବୋଧ ହୁଏ । ଗୁରୁଙ୍କ ଆଦେଶରେ ଗୁହ୍ୟବ୍ରହ୍ମ ବିଦ୍ୟାଳୟକୁ ନ ଆସିବା ଦ୍ୱାରା 'ଇଚ୍ଛାବତୀ'ର ବିରହ ଯେପରି ଭାବରେ ବୃଦ୍ଧି ପାଇଛି ଓ ଅମ୍ବିକାଙ୍କ ଦ୍ୱାରା ଯେପରି ଭାବରେ ନାୟକ ନାୟିକାଙ୍କର ମିଳନ ସମ୍ଭବ ହୋଇଛି, ତାହା ପ୍ରାୟ ଅଧିକାଂଶ କବିଙ୍କ ରଚନାରେ ଦେଖିବାକୁ ମିଳେ । କିନ୍ତୁ କବି ଧନଞ୍ଜୟଙ୍କ 'ଇଚ୍ଛାବତୀ' ବିଦ୍ୟାଳୟ ପରିତ୍ୟାଗ ପରେ କେବେହେଲେ ଥରେ ସୁଦ୍ଧା ନାୟକ ବିଷୟରେ ଚିନ୍ତାକରି ନାହିଁ । ନାୟକ ମଧୁକର ନାୟିକା ଇଚ୍ଛାବତୀର ବିରହରେ ସନ୍ତପ୍ତ ହୋଇ ଅରଣ୍ୟରେ ଶୋକାକୁଳ ଭାବରେ ବୁଲୁଥିବାବେଳେ ନାୟିକା ଅଦୂରରେ ଥାଇ ସୁଦ୍ଧା ସମ୍ମୁଖକୁ ନ ଆସି କେବଳ ଦାସୀ ହସ୍ତରେ ସମ୍ବାଦ ଦେଇ ଅନ୍ତଃପୁରକୁ ଚାଲି ଯାଇଛି । ପରଦିନ ସ୍ୱଚକ୍ଷୁରେ ପ୍ରାଣପ୍ରିୟ ନାୟକକୁ ପାଇ ତା ପ୍ରତି ଆନ୍ତରିକତା ଦେଖାଇବା ଦୂରର କଥା, ବରଂ ଭୟ ଦେଖାଇ କହିଛି ।

"ଏମନ୍ତେ ଗୃହରେ ବଚନସୁ ଶୁଣି,
ମଧୁର କର କହେ ଇଚ୍ଛାବାଣୀ ।
ଆହେ ପଥିକ ଚନ୍ଦ୍ରା ଆକୁଳିତ,
ମୂର୍ଖ ପଣରେ ତୁ କହୁ ଏମନ୍ତ,
ମୁଁ ଅବଳାଜନ
ମୋତେ କ୍ଷମା କରୁ ସୁନ୍ଦ୍ର ବଚନ,

× × × ×

କନ୍ଦର୍ପବାଣେ ଅବଶ ଚେତନ,
କ୍ଷମା କହୁ ମୋରେ ଆର୍ତ୍ତ ବଚନ ।
ଯେବେ ପିତା ମୋର ଶୁଣିବ ଏହା,
ତିନିଭୁବନେ ନାହିଁ ମୋତେ ସାହା,
ତୁ କାମୁକ ଶୁଣ
କ୍ଷମା ତେଜବୁ ତୁ ବଅର୍ଥେ ପ୍ରାଣ ।

( ଇଚ୍ଛାବତୀ, ଷଷ୍ଠଛାନ୍ଦ, ତୃତୀୟ ଓ ଦ୍ୱାଦଶ ପାଦ )

ପରେ ନାୟକର ଗୃହରେ ମୁଗ୍ଧ ହୋଇ ତା ସହିତ କେଳି କରିବା ଆଦୌ ବିଶୁଦ୍ଧ ପ୍ରେମର ଲକ୍ଷଣ ନୁହେଁ, ବରଂ ଏପ୍ରକାର ନାୟିକାଙ୍କୁ 'ଖଣ୍ଡିତା' ବା 'କଳହାନ୍ତରିତା' ଆଖ୍ୟା ଦିଆଯାଇ ପାରେ ।

କନ୍ୟାନ୍ତଃପୁରରେ ଚୋରର ପ୍ରବେଶ ବାର୍ତ୍ତା ଶୁଣି ରାଜା ଭୋଜ ଚୋରକୁ ଧରିବା ଲାଗି କୋଟଆଳକୁ ଆଦେଶ ଦେଲେ । କୋଟଆଳ ପୁରୁଷ ଅପ୍ରବେଶସ୍ଥଳ କନ୍ୟାନ୍ତଃପୁରରୁ 'ମଦନା'ନାମ୍ନୀ ମୃଦୁହୁଲି ସାହାଯ୍ୟରେ ଗୃହକୁ ଧରିବା ବିଷୟ ବନମାଳୀଙ୍କ 'ଗୃହଇଚ୍ଛାବତୀ'ରେ ବର୍ଣ୍ଣିତ ହୋଇଛି । କିନ୍ତୁ ଧନଞ୍ଜୟଙ୍କ 'ଇଚ୍ଛାବତୀ'

ଗ୍ରନ୍ଥରେ ଯେପରି ଭାବରେ ମଧୁକରଙ୍କୁ କନ୍ୟାନ୍ତଃପୁରରୁ ଧରାଯାଇଛି ତାହା ଆଦୌ ସନ୍ତୋଷ ଜନକ ଉପାୟ ନୁହେଁ, କିମ୍ବା କନ୍ୟାନ୍ତ-ପୁରରୁ ସେ ଉପାୟରେ ଚୋର ଧରିବା ଆଦୌ ସମ୍ଭବ ନୁହେଁ ।

ଧନଞ୍ଜୟଙ୍କ ନାୟକ ମଧୁକର, ବଧ୍ୟଭୂମିରେ ଯେପରି ଭାବରେ ନାୟିକା ସହିତ ହୋଇଥିବା କ୍ରୀଡ଼ା କୌତୁକାଦି ବର୍ଣ୍ଣନା କରିଛି ତାହା ଆଦୌ ସଙ୍ଗତ ନୁହେଁ । ଯଥା :—

‘ ଶଯ୍ୟାରୁ ଉଠିଣ ଥାଇ ଅଳସିତ ଅଙ୍ଗ ହୋଇ
ଘୂର୍ଣ୍ଣିତ ନେତ୍ରରେ ଚାହିଁ ମୋତେ ଚାହିଁ ।
ଫୁଲିଲ ଗୁରୁ ଜଘନ ପୀନସ୍ତନରୁ ବସନ
ନଦ୍ୟା ଅଳସରେ ଖସି ଶୋଭା ରଞ୍ଜଇ,
ସ୍ମରେ ସେ ‘ଇଚ୍ଛା’କୁ ଶନ୍ତଇ” ।

× × × ×

“କ୍ଷୀନବାସ ତନ୍ତୁ ଯେସନେ ଲାଗେ ଅଙ୍ଗରେ,
ସେସନେ ସେ ଜଡ଼ିଥାଇ ମୋର ଅଙ୍ଗରେ ।
ସ୍ମରେ ସେ ମୋର ବିଚ୍ଛେଦେ ଅନଙ୍ଗେ ଦୁଃଖୀ,
ଜୀବନ କି ଧରିଥିବ ଚନ୍ଦ୍ରମାମୁଖୀ” । ଇତ୍ୟାଦି ।

ଯାହାର ବଳରେ ନାୟକ ମଧୁକର ଏପରି ଧୀବ୍ରତ ଏବଂ ଆନନ୍ଦରେ ମୃତ୍ୟୁକୁ ବରଣ କରିବାଲାଗି ପ୍ରସ୍ତୁତ, ନାୟକର ସେହି ମୃତ୍ୟୁଦଣ୍ଡ ସମ୍ବାଦ ଶ୍ରବଣରେ ଧନଞ୍ଜୟଙ୍କ ବର୍ଣ୍ଣିତା ନାୟିକା ଇଚ୍ଛାବତୀର ମନୋଭାବ ଆଦି ବର୍ଣ୍ଣନା କରିବା କବିଙ୍କ ପକ୍ଷେ ଏକାନ୍ତ ଆବଶ୍ୟକ । କବି ସେ ପ୍ରକାର ବର୍ଣ୍ଣନା ପ୍ରତି ମନ ନ ଦେଇ କେବଳ ନାୟକ ମୁଖରେ ନାୟିକାର ନଗ୍ନ ରୂପ ବର୍ଣ୍ଣନା କରାଇବା

କାବ୍ୟର ପରମ୍ପରା ଦୃଷ୍ଟିରୁ ସେତିକି କ୍ଷତିକାରକ, ବର୍ଣ୍ଣନା ଶୃଙ୍ଖଳା ଦୃଷ୍ଟିରୁ ସେତିକି ଅସ୍ୱାଭାବିକ ପରି ବୋଧହୁଏ ।

କିନ୍ତୁ କବି ବନମାଳୀ ବର୍ଣ୍ଣିତା ନାୟିକା ନାୟକର ମୃତ୍ୟୁଦଣ୍ଡ ସମ୍ବାଦ ଶ୍ରବଣରେ ବିବ୍ରତା ଓ ମୂର୍ଚ୍ଛିତା ହୋଇଛନ୍ତି ଏବଂ ଚେତନା-ଲାଭ ପରେ ଗୁରୁଗୌରବ, ମାନ ଅପମାନ ତଥା କୁଳମର୍ଯ୍ୟାଦା ପ୍ରତି ଭ୍ରୂକ୍ଷେପ ନ କରି ପ୍ରାଣପ୍ରିୟ ନାୟକର ଉଦ୍ଧାର ନିମିତ୍ତ ଆଲୁଳାୟିତ କେଶା ଓ ଅଶ୍ରୁମୁଖୀ ହୋଇ ବଧଭୂମିକୁ ଧାଇଁ ଯାଇଛନ୍ତି ଏବଂ ତାର ଜୀବନାଧାର ପ୍ରାଣପ୍ରିୟକୁ ମୃତ୍ୟୁଦଣ୍ଡରୁ ଅବ୍ୟାହତି ଦେଲେ, ସେ ଆଜୀବନ ଦୋସାଧିର ସେବିକା ହୋଇ ରହିବାକୁ ପ୍ରତିଜ୍ଞା କରିଛନ୍ତି । କିନ୍ତୁ ଦୋସାଧି ସେ କଥାରେ ଏକମତ ନହେବାରୁ ନାୟିକା ତାର ପ୍ରଣୟୀ ସହିତ ନିଜକୁ ହତ୍ୟା କରିବାକୁ ମଧ୍ୟ ଅନୁରୋଧ କରିଛନ୍ତି ।

ପୁନଶ୍ଚ ବଧଭୂମିରେ ବନମାଳୀଙ୍କ ନାୟକ ବୃଦ୍ଧବୃନ୍ଦ ସ୍ୱପ୍ରାଣପ୍ରିୟା ଇଚ୍ଛାବତୀକୁ ଥରେ ମାତ୍ର ଦେଖିବାକୁ ଇଚ୍ଛା ପ୍ରକାଶ କରିଛନ୍ତି ।

ନାୟକର ଉଦ୍ଧାର ନିମିତ୍ତ କବି ଧନଞ୍ଜୟ ନାରଦଙ୍କ ସମାଗମ କରାଇ କେବଳ ଯେ ଅତି ମାନୁଷିକତା ସୃଷ୍ଟି କରିଛନ୍ତି ତା' ନୁହେଁ, କାଳ୍ପନିକ ଆଖ୍ୟାନରେ ପୌରାଣିକତ୍ୱ ଆରୋପ କରିଛନ୍ତି । ସେଠାରେ ନାରଦଙ୍କୁ ଉପସ୍ଥିତ ନ କରାଇ ଅନ୍ୟ କୌଣସି ଲୌକିକ ଉପାୟରେ ନାୟକର ପ୍ରାଣରକ୍ଷା କରିଥିଲେ ବିଷୟବସ୍ତୁଟି ଉପାଦେୟ ହୋଇଥାନ୍ତା ।

କବି ବନମାଳୀ ସ୍ୱକାବ୍ୟର ନାୟକକୁ ମୃତ୍ୟୁମୁଖରୁ ବଞ୍ଚାଇବା ନିମିତ୍ତ ବହୁ ପ୍ରକାର କୌଶଳର ସୂତ୍ରପାତ କରିଛନ୍ତି ।

ରାଜା ଭୋଜ ଦେବ ନାୟକର ଅନନ୍ୟ ସୁନ୍ଦର ରୂପରେ ମୁଗ୍ଧ ହୋଇ କେବଳ ପ୍ରଣୟୀ ପ୍ରଣୟିମାଙ୍କ ପ୍ରେମ ପରୀକ୍ଷା ନିମିତ୍ତ ମୃତ୍ୟୁ-ଦଣ୍ଡ ରୂପକ ଏକ ପ୍ରହସନ ଆରମ୍ଭ କରିବା ଲାଗି ଆଦେଶ ଦେଇଛନ୍ତି । ପୁନଶ୍ଚ ବେତାଳ ମୁଖରୁ ନାୟକ ଜଣେ ରାଜକୁମାର ବୋଲି ଶୁଣି ରାଜା ସେହି ପ୍ରହସନ ବନ୍ଦ କରିବାକୁ ଆଦେଶ ଦେଇଛନ୍ତି । କବି ବନମାଳୀଙ୍କ କୌଶଳରେ ଯେପରି ସ୍ୱାଭାବିକତା ଅଛି, ସେପରି ଚନ୍ଦ୍ରାଧାର ଧନଞ୍ଜୟ ଭଞ୍ଜଙ୍କ 'ଇଚ୍ଛାବତୀ'ରେ ପରିଲକ୍ଷିତ ହୁଏ ନାହିଁ । ବନମାଳୀ ସବୁ ସ୍ଥଳରେ ଅପୂର୍ବ କୌଶଳ ସୃଷ୍ଟିକରି କାବ୍ୟଟିକୁ ଅଯଥା ଅତି ମାନୁଷିକ ବାତାବରଣରୁ ମୁକ୍ତ କରିଛନ୍ତି ।

## ପରବର୍ତ୍ତୀ କାବ୍ୟ ଉପରେ ଗୁପ୍ତଇଚ୍ଛାବତୀର ପ୍ରଭାବ:—

ପରବର୍ତ୍ତୀକାଳରେ ରଚିତ କେତେକ ଗ୍ରନ୍ଥ ଉପରେ 'ଗୁପ୍ତଇଚ୍ଛାବତୀ'ର ପ୍ରଭାବ ବିଷୟ ଆଲୋଚନା କଲେ ସର୍ବ-ପ୍ରଥମେ ଧନଞ୍ଜୟଙ୍କ 'ଇଚ୍ଛାବତୀ' କାବ୍ୟ ଉପରେ ଦୃଷ୍ଟି ପଡ଼େ । ଏହାର 'ଗୁପ୍ତଇଚ୍ଛାବତୀ' କାବ୍ୟର ଏକ ଅନୁକରଣ ବୋଲି କହିଲେ ଆଦୌ ଅତ୍ୟୁକ୍ତି ହେବ ନାହିଁ ।

କବି ପ୍ରତାପ ରାୟଙ୍କ 'ଶଶିସେଣା' କାବ୍ୟ ଉପରେ ଉଣା-ଅଧିକେ 'ଗୁପ୍ତଇଚ୍ଛାବତୀ'ର ପ୍ରଭାବ ପରିଲକ୍ଷିତ ହୁଏ । ପ୍ରଥମତଃ 'ଶଶିସେଣା' କାବ୍ୟର ମଙ୍ଗଳାଚରଣ ପରେ, 'ଗୁପ୍ତଇଚ୍ଛାବତୀ' କାବ୍ୟର ନାୟକ ଗୁରୁବ୍ରହ୍ମ, ନାୟିକା ଭୋଜରାଜ ନନ୍ଦନୀ ଇଚ୍ଛାବତୀ ଆଗରେ 'ଶଶିସେଣା' ଉପାଖ୍ୟାନଟି କହିଥିବାର ବର୍ଣ୍ଣନା ପ୍ରତାପ-ରାୟ କରିଛନ୍ତି ।

"ବୈରାଜ ନୃପତିର ଜେମା ଇନ୍ଦ୍ରା ସୁନ୍ଦରୀ
ଗୁରୁବ୍ରହ୍ମ ନାମେ ନିଜ ପତି ତାହାର"
ସ୍ୱାମିକୁ ଶଣ ମାନ ଧନେ କର ସ୍ୱକେଶୀ,
ଅନେକ ପ୍ରକାରେ ଗୃହ୍ଚ ବଚନ ଭାଷି"

× × ×

ଧନ୍ୟ ଧନ୍ୟ ଶଶିସେଣା ନୃପଙ୍କ ଦୁଲଣୀ ।

× × ×

କରପଦ ଯୋଡ଼ି ବୋଲେ ଶୁଣ ଦ୍ୱିଜନାଥ,
ଶଶିସେଣା କଥା ମୋତେ କହ କେମନ୍ତ ।" (୫)

ଦ୍ୱିତୀୟତଃ ଶଶିସେଣା କାବ୍ୟର ନାୟକ ମନ୍ତ୍ରୀପୁତ୍ର ଅହିମାଣିକ୍ୟ ସହିତ ନାୟିକା ଶଶିସେଣାର ସାକ୍ଷାତ, ଗୁଟ-ଇଚ୍ଛାବତୀର ନାୟକ ନାୟିକାଙ୍କ ସାକ୍ଷାତ ପରି ବିଦ୍ୟାଳୟରେ ହୋଇଛି ଏବଂ ସତ୍ୟ କରାଇ ଝଡ଼ ଗୋଟାଇ ଆଣି ଦେଇ ନାୟକ ନାୟିକାଙ୍କୁ ଲଭ କରିଛି । ଯଦ୍ୟପି ଉକ୍ତ କବିଙ୍କ ସମ୍ପୂର୍ଣ୍ଣ ବିଷୟବସ୍ତୁ ଗୁଟଇଚ୍ଛାବତୀର ଅନୁରୂପ ନୁହେଁ, ତଥାପି ଶଶିସେଣା କାବ୍ୟ ଉପରେ 'ଗୁଟଇଚ୍ଛାବତୀ'ର ପ୍ରଭାବ ସୁସ୍ପଷ୍ଟ ।

ପ୍ରାଚୀନ ବଙ୍ଗଳା ସାହିତ୍ୟରେ ସଖୀସେନା' ନାମରେ ଖଣ୍ଡିଏ କାବ୍ୟ ଅଛି । ବଙ୍ଗଳା ସାହିତ୍ୟର ସମାଲୋଚକ ଡକ୍ଟର ତମୋନାଶ ଚନ୍ଦ୍ର ଦାସଗୁପ୍ତ "ପ୍ରାଚୀନ ବାଙ୍ଗଲା ସାହିତ୍ୟେର ଇତିହାସ"ରେ 'ସଖୀସେନା' କାବ୍ୟ ଓ ତାହାର କବି ସମ୍ବନ୍ଧରେ ନିମ୍ନଲିଖିତ ମତେ ଲେଖିଛନ୍ତି—

---

୫ । ଶଶିସେଣା, ପ୍ରାଚୀ ସଂସ୍କରଣ, ପୃଷ୍ଠା ୨

"ଫକିର ରାମ କବିଭୂଷଣ ଖ୍ରୀଃ ୧୬ଶ ଶତାବ୍ଦୀର ପ୍ରଥମାର୍ଦ୍ଧେର ବ୍ୟକ୍ତି । କବିର ବୈଦ୍ୟବଂଶେ ଜନ୍ମହୟ ଏବଂ ଜନ୍ମସ୍ଥାନ ବର୍ଦ୍ଧମାନ ଛିଲ । × × × ଗଳ୍ପେର ମୂଳ ଘଟନା 'ଶଶୀସେନା' ନାମକ ଏକଟି ରାଜକନ୍ୟାର ପ୍ରତି ସେଇ ରାଜ୍ୟେର କୋଟାଲ୍ ପୁତ୍ରେର ପ୍ରେମ ନିବେଦନ ଓ ବିବାହ । ଏକ ପାଠଶାଳାୟ ଉଭୟେଇ କିଶୋର ବୟସେ ପଡ଼ାଶୁନା କରିତ । × × × × ଏକଦିନେ ରାଜକନ୍ୟାର ଲିଖିବାର କଲମ ମାଟିତେ ପଡ଼ିୟା ଯାୟ । କୋଟାଲ୍ ପୁତ୍ର ତାହା ତୁଲିୟା ଦେୟ ବଟେ, କିନ୍ତୁ ପୂର୍ବେ ତାହାକେ ପ୍ରତିଜ୍ଞା କରାଇୟା ଲୟ ଯେ ସେ ଯାହା ଚାହିବେ ତାହା ତାଁହାକେ ଦିତେ ହଇବେ । ଏଇ କଲମ ଘଟିତ ବ୍ୟାପାର ତିନ୍‌ବାର ଘଟେ ଏବଂ ତିନ୍‌ବାର ରାଜକନ୍ୟା ପ୍ରତିଜ୍ଞା କରେନ ।"

"ତୁମି ପଡ଼ ଉଚାସନେ ଆମି ହେଟେ ପଡ଼ି,
ପରିହାସ କରିୟା ଫେଲିୟା ଦିଲେ ଖୋଡ଼ି
ତିନ୍ ବାର ଖୋଡ଼ି ତୁଲ୍ୟା ଦିଲାଙ୍ ତୋମାର ହାତେ
ହାସ୍ୟ ମୁଖେ ସତ୍ୟ ଯେ କରିଲେ ଆମାର ସାଥେ"

× × ×

ଭଣଏ ଫକୀର ରାମ ଶ୍ରୀ କଥାଦ୍ଭୁତ,
ଗୁଡ଼ିଲେ ଗୁଡ଼ାନ ନାଇ, ଯଦି କାଠ ମୁଡ଼ି" (୬)

ତେଣୁ ଜଣାଯାଏ, କବି ବନମାଳୀଙ୍କ 'ଗୁଟିଇଚ୍ଛାବତୀ'ର ପ୍ରଭାବ ଧନଞ୍ଜୟଙ୍କ 'ଇଚ୍ଛାବତୀ' ପ୍ରତାପ ରାୟଙ୍କ 'ଶଶିସେଣା' ଓ

---

୬ । ପ୍ରାଚୀନ ବାଙ୍ଗଲା ସାହିତ୍ୟେର ଇତିହାସ' ପୃଷ୍ଠା ୫୬୭ ।

ବର୍ତ୍ତମାନ ଜନର କବି ଫକୀର ରାମଙ୍କ 'ସଖୀସେନା' ଉପରେ ଭରସା ଅଧିକ ପଡ଼ିଥିଲା ।

## 'ଶ୍ରୀଇଚ୍ଛାବତୀ' ବିଷୟବସ୍ତୁର ଐତିହାସିକତା:—

ପ୍ରାଚୀନ ମୟୂରଭଞ୍ଜ ରାଜ୍ୟ ଅନ୍ତର୍ଗତ, ପଶ୍ଚିମ ବଙ୍ଗଳାର ମେଦିନୀପୁର ଜିଲ୍ଲାସ୍ଥ ଦାନ୍ତନ୍ ନିକଟରେ ମୁଗଲ୍‌ମାରି ବୋଲି ଏକ ସ୍ଥାନ ଅଛି । ପୂର୍ବକାଳରେ ବିକ୍ରମକେତୁ ନାମକ ଜଣେ ରାଜାଙ୍କ ରାଜଧାନୀ ସେଠାରେ ଥିବାର କେତେକ ଧ୍ୱଂସାବଶେଷରୁ ପ୍ରମାଣ ମିଳେ । ସେହି ବିକ୍ରମକେତୁ ବା ପ୍ରତାପାଦିତ୍ୟଙ୍କର 'ଶଶିସେନା' ନାମରେ ଏକ କନ୍ୟା ଥିଲା । ପ୍ରତାପାଦିତ୍ୟଙ୍କ ଦୁର୍ଗ ସମ୍ମୁଖରେ ଏକ ପାଠଶାଳା ଥିଲା । ସେହି ପାଠଶାଳାର ଧ୍ୱଂସାବଶେଷ ମଧ୍ୟ ଅଦ୍ୟାପି ପରିଲକ୍ଷିତ ହୁଏ । ସେ ଅଞ୍ଚଳର ଲୋକମାନଙ୍କଠାରୁ ବନମାଳୀଙ୍କ ବର୍ଣ୍ଣିତ 'ଶ୍ରୀଇଚ୍ଛାବତୀ'ର କାହାଣୀ ବା ପ୍ରତାପ ରାୟଙ୍କ ବର୍ଣ୍ଣିତ 'ଶଶିସେଣା' କାହାଣୀ ଅନୁରୂପ କାହାଣୀ ଶୁଣିବାକୁ ମିଳେ । ଯେଉଁ ପାଠଶାଳାରେ ରାଜକୁମାରୀ ପାଠ ପଢ଼ୁଥିଲା ଏବଂ ଯେଉଁଠାରେ ସେ ତାର ପ୍ରଣୟୀକୁ ଲାଭ କରିଥିଲା; ତାର ପରବର୍ତ୍ତୀ ଜୀବନରେ ସେହି ସ୍ମୃତିକୁ ଅକ୍ଷୁଣ୍ଣ ରଖିବା ପାଇଁ ସେ ସେହିଠାରେ ଏକ ଦୁର୍ଗ ନିର୍ମାଣ କରାଇଥିଲା । ଅଦ୍ୟାପି ଲୋକେ ସେହି ଧ୍ୱଂସାବଶେଷକୁ 'ଶଶିସେଣା ପାଠଶାଳା' ନାମରେ ଅଭିହିତ କରୁଛନ୍ତି । ଏ ସମ୍ବନ୍ଧରେ ବଙ୍ଗଳାର ପ୍ରସିଦ୍ଧ ପ୍ରତ୍ନତତ୍ତ୍ୱବିତ୍ ସ୍ୱର୍ଗତ ନଗେନ୍ଦ୍ରନାଥ ବସୁ ବର୍ଣ୍ଣନା କରିଅଛନ୍ତି—

"About two miles to the north of Dantan are lying the extensive ruins of the once famous Mughal Mari; XXX The natives point to this place as having been the site of the gada, which was built by the

famous warrior Vikramajit. × × × By the side of the entrance in to Mughalmari from the side of Dantan is a mound generally called Pathaśala of Saśisenā. × × ×

The story of Saśisena is almost universally known in this part of the country. She was the daughter of king Vikramajit, alias Pratapaditya. A time was when her story was both told and listened to with great interest not in this part alone, but through out the length and breadth of West Bengal.

There is a belief amongst the natives of this place that the gada was built by Saśisenā and her husband, on their return, just on the spot where the school once stood. Hence, the place is still known by the name of Saśisenā. It was at the hands of the Mahomedans that this gaḍa met with its destruction".

ବନମାଳୀ ଦାସଙ୍କ ବର୍ଣ୍ଣିତ ଗୁରୁବ୍ରହ୍ମ ନିଜ ରାଜ୍ୟରୁ ବାହାରି ଯାଇ ସୁବର୍ଣ୍ଣରେଖା ନଦୀରେ ସ୍ନାନ ସାରି ଭୋଜ ନରପତିଙ୍କ ରାଜ୍ୟରେ ପ୍ରବେଶ କରିଥିଲେ ।

"ରାଜ୍ୟ ସମ୍ପଦକୁ ତୁଚ୍ଛ ହାତେ ଘେନି ଦଣ୍ଡ
ନଗରୁ ବାହାର ହୋଇଲେ ମନେ ପରଚଣ୍ଡ ହେ ।

× × × ×

ସେହୁ କଟକରେ ରାଜା ଭୋଜ ଚକ୍ରବର୍ତ୍ତୀ,
ସୁବୁଦ୍ଧି ପଣ୍ଡିତ ସେ ଧାର୍ମିକ ନରପତି ହେ ।

× × ×

ସୁବର୍ଣ୍ଣରେଖା ଯେ ନାମେ ନଦୀ ବିଦ୍ୟମାନ,
ଦେଖି ଗୁରୁବ୍ରହ୍ମ ଚିତ୍ତେ କଲେକ ସ୍ନାହାନ ଯେ" ।

( ପ୍ରଥମ ଛାନ୍ଦ, ୩୮, ୩୬, [illegible] ପଦ )

ନଗେନ୍ଦ୍ରନାଥ ବସୁଙ୍କ ବର୍ଣ୍ଣନାରୁ ଜଣାପଡ଼େ ଯେ ପ୍ରାଚୀନ କାଳରେ 'ମୁଗଲମାରୀ' ରେ ଭଞ୍ଜବଂଶର ଗୋଟିଏ ଦୁର୍ଗ ଥିଲା । ସେହି ଦୁର୍ଗାଧୀଶଙ୍କ କନ୍ୟା ଅନ୍ୟ ଜଣେ ରାଜକୁମାର ବା ମନ୍ତ୍ରୀ-ପୁତ୍ରର ପ୍ରଣୟରେ ପଡ଼ି ତାଙ୍କୁ ବିବାହ କରିଥିଲା । ଏହି ଘଟଣାଟି ଅନେକଦିନରୁ ଘଟିଥିବାରୁ ତାହା କେବଳ ଲୋକମୁଖରେ କିମ୍ବଦନ୍ତୀ ରୂପେ ଜୀବିତ ରହିଛି ।

ଏହା ଅବଲମ୍ବନରେ କବି ବନମାଳୀ, ରାଜକବି ଧନଞ୍ଜୟ ଭଞ୍ଜ, କିଶୁନ୍ ପ୍ରତାପ ରାୟ ଓ ବଙ୍ଗଦେଶୀୟ ଫକୀରରାମ କାବ୍ୟ ରଚନା କରିଥିଲେ । କିନ୍ତୁ କବି ବନମାଳୀ ଏ ଘଟଣାଟିକୁ ସର୍ବପ୍ରଥମେ କାବ୍ୟରେ ରୂପାୟିତ କରିବାବେଳେ ଉକ୍ତ ଭଞ୍ଜ ନରପତିଙ୍କୁ ବୋଧହୁଏ ମେଦିନୀପୁର ଦାନ୍ତନରେ ଉପସ୍ଥିତ ରୂପେ କଳ୍ପନା କରି ତାଙ୍କ ରାଜ୍ୟର ସୀମା ସୁବର୍ଣ୍ଣରେଖା ନଦୀ ବୋଲି ସ୍ପଷ୍ଟରେ ଉଲ୍ଲେଖ କରିଛନ୍ତି । ଆଉ ମଧ୍ୟ କବି ଷଷ୍ଠ ଛାନ୍ଦରେ 'ଦାନ୍ତନ କଟକ' ବା ବର୍ତ୍ତମାନ ଦାନ୍ତନର ବର୍ଣ୍ଣନାକରି ଗ୍ରନ୍ଥଟିର ଐତିହାସିକ ଗୁରୁତ୍ୱ ବଢ଼ାଇ ଦେଇଛନ୍ତି । ତେଣୁ ଘଟଣାଟିରେ ଐତିହାସିକ ତଥ୍ୟ ନିହିତ ଥିବାର ମନେ ହେଲେ ମଧ୍ୟ ଏସମ୍ପର୍କରେ ସିଦ୍ଧାନ୍ତରେ ଉପନୀତ ହେବାପାଇଁ ଅଧିକ ଗବେଷଣା ଆବଶ୍ୟକ ।

'ରସିକ ଇନ୍ଦୁମତୀ' ଗ୍ରନ୍ଥଟି ଛଅଟି ଛାନ୍ଦରେ ସମ୍ପୂର୍ଣ୍ଣ ଏବଂ ସେଗୁଡ଼ିକରେ ଯଥାକ୍ରମେ ନିମ୍ନଲିଖିତ ରାଗ ବ୍ୟବହୃତ ହୋଇଅଛି । ଯଥା ମଙ୍ଗଳଗୁଜ୍ଜରୀ, ବରାଡ଼ି, ଆଷାଢ଼ ଶୁକ୍ଳବାଣୀ, କେଦାର (କେଦାର ଚକ୍ରକେଳି ବାଣୀ) ମଙ୍ଗଳଗୁଜ୍ଜରୀ ଓ କାମୋଦୀ ଦେଶାକ୍ଷ । ଛନ୍ଦର ଭାଷା, ସହଜ, ସରଳ ଓ ଶବ୍ଦାଳଙ୍କାର । ସ୍ଥାନେ ସ୍ଥାନେ କଠିନ ସଂସ୍କୃତ ଶବ୍ଦ ଏବଂ ବହୁ ସ୍ଥଳରେ ପ୍ରାଚୀନ ଓଡ଼ିଆ ଶବ୍ଦର ପ୍ରୟୋଗ ଦେଖିବାକୁ ମିଳେ ।

ପ୍ରଥମ ଓଡ଼ିଆ କାବ୍ୟ ପ୍ରଣେତା ଅର୍ଜ୍ଜୁନ ଦାସଙ୍କ 'ରାମ ବିଭା' ଓ 'କଳ୍ପଲତା' ଶିଶୁଶଙ୍କର ଦାସଙ୍କ 'ଉଷା ଭିଳାଷ' କାର୍ତ୍ତିକ ଦାସଙ୍କ

'ରୁକ୍ମିଣୀ ବିଭା' ପ୍ରତାପ ରାୟଙ୍କ 'ଶଶିସେଣା' ଗୃନ୍ଦ ଦାସଙ୍କ ଗୋପୀଚନ୍ଦନ ଦେବ ଦୁର୍ଲ୍ଲଭ ଦାସଙ୍କ 'ରହସ୍ୟ ମଞ୍ଜରୀ' ବିଷ୍ଣୁ ଦାସଙ୍କ 'କଳାବତୀ' ଓ 'ପ୍ରେମ ଲୋଚନା' ବାଣପୁର ରାଜ ରଘୁନାଥ ହରିଚନ୍ଦନଙ୍କ 'ଲୀଳାବତୀ' ରାଜକବି ଧନଞ୍ଜୟ ଭଞ୍ଜଙ୍କ 'ଅନଙ୍ଗରେଖା' ଓ 'ଇଚ୍ଛାବତୀ' ଓ ଘନକୃଷ୍ଣ ଦାସଙ୍କ ରସକଲ୍ଲୋଳ' ପରି ଗ୍ରନ୍ଥ-ଇଚ୍ଛାବତୀର ପ୍ରଥମ ଛାନ୍ଦରେ ଜଗନ୍ନାଥ ମହାପ୍ରଭୁଙ୍କ ବିସ୍ତୃତ ବନ୍ଦନା ପରିଦୃଷ୍ଟ ହୁଏ । ଏହା ଉକ୍ତ ଗ୍ରନ୍ଥର ପ୍ରାଚୀନତ୍ୱର ଏକ ନିଦର୍ଶନ । କାରଣ ଷୋଡ଼ଶ ଶତାବ୍ଦୀ ମଧ୍ୟଭାଗରୁ ଉତ୍କଳରେ ଶ୍ରୀ ରାଧାକୃଷ୍ଣ ପୂଜା କ୍ରମଶଃ ବିଶେଷ ପ୍ରାଧାନ୍ୟ ଲାଭ କରିଥିବାରୁ, ସେ ଯୁଗର ଅଧିକାଂଶ କବି ଗ୍ରନ୍ଥ ଆଦ୍ୟରେ ଉତ୍କଳର ପ୍ରଧାନ ଆରାଧ୍ୟ ଦେବତା ଶ୍ରୀ ଜଗନ୍ନାଥଙ୍କ ପରିବର୍ତ୍ତିରେ ଶ୍ରୀ ରାଧାକୃଷ୍ଣ ସ୍ତୁତି ସନ୍ନିବେଶ କରି ତତ୍ପରେ ମୁଖ୍ୟ ବିଷୟବସ୍ତୁର ଅବତାରଣା କରୁଥିଲେ । ତେଣୁ ପ୍ରାଚୀନ ଓଡ଼ିଆ ସାହିତ୍ୟର ଇତିହାସ ରଚନା ପାଇଁ ପ୍ରତ୍ୟେକ ଗ୍ରନ୍ଥର ମଙ୍ଗଳା ଚରଣ' ଅଧ୍ୟୟନ ଏକାନ୍ତ ଆବଶ୍ୟକ ।

ପରିଶେଷରେ ଏତିକି ବକ୍ତବ୍ୟ ଯେ ଐତିହାସିକ ଗବେଷଣା କ୍ଷେତ୍ରରେ ମୋର ଦୀର୍ଘକାଳର ଅଭିଜ୍ଞତା ଥିଲେ ମଧ୍ୟ ପ୍ରାଚୀନ ଗ୍ରନ୍ଥ ସମ୍ପାଦନ କ୍ଷେତ୍ରରେ ଏହା ମୋର ନବୀନ ଉଦ୍ୟମ । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ସ୍ୱଳ୍ପ ଜ୍ଞାନ ଓ ଏହି ଗ୍ରନ୍ଥ ମୁଦ୍ରଣ ପାଇଁ ଏକାଧିକ ଶୁଦ୍ଧ ପୋଥିର ଦୁଷ୍ପ୍ରାପ୍ୟତା ମଧ୍ୟ ଏ କ୍ଷେତ୍ରରେ ପ୍ରଧାନ ପ୍ରତିବନ୍ଧକ । ତେଣୁ ଆଲୋଚନା ଓ ପାଠୋଦ୍ଧାରରେ ଭ୍ରମ ପ୍ରମାଦ ରହିଥିବା ସ୍ୱାଭାବିକ । ତଥାପି 'ନାହିଁ ମାମୁଁଠାରୁ କଣା ମାମୁଁ ଭଲ' ନ୍ୟାୟରେ ଉକ୍ତ ଲୋକପ୍ରିୟ ପ୍ରାଚୀନ କାବ୍ୟର ପ୍ରଥମ ପ୍ରକାଶ ସୁଧୀ ସମାଜରେ ଆଦର ଲାଭ କରିବ ବୋଲି ଆଶାକରେ ।

ଭୁବନେଶ୍ୱର
ଦୋଳପୂର୍ଣ୍ଣିମା
ତା ୨-୩-୧୯୬୧

**ଶ୍ରୀ କେଦାରନାଥ ମହାପାତ୍ର**
ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ସଂରକ୍ଷକ

# ଚାଟ ଇଚ୍ଛାବତୀ

## ପ୍ରଥମ ଛାନ୍ଦ ।

( ·ରାଗ-ମଙ୍ଗଳଗୁର୍ଜ୍ଜରୀ )

ବନ୍ଦଇ ଯେ ଗଣପତି ଗଉରୀ[1] ନନ୍ଦନ ।
କପୋଳେ ଶୋଭଇ ତୋର ଶ୍ରୀଖଣ୍ଡ ଚନ୍ଦନ । ୧ ।
ଦକ୍ଷିଣ ଦ୍ୱାରେଣ ତୁ ସର୍ବଦାଂ ଅଧିପତି ।
ସୁମରନ୍ତେ ବିଘ୍ନ ତୁ ନିବାରୁ ଗଣପତି । ୨ ।
ସଦାଶିବ ତାତ ତୁମ୍ଭେ[2] ପାର୍ବତୀ ନନ୍ଦନ ।
ମୋତେ ତୁ ପ୍ରସନ୍ନ ହୁଅ ବିଘ୍ନେଶ୍ୱର ପୁଣ । ୩ ।
ଚୁଠ ଇଚ୍ଛାବତୀ କଥା କହିବାକୁ ଇଚ୍ଛାଂ ।
ପ୍ରସନ୍ନେ ସାରଳା ତୁ ପୁରାଅ ମନ ବାଞ୍ଛା । ୪ ।
ସ୍ୱେକରାଜା ନନ୍ଦନୀ ସୁନ୍ଦରୀ ଇଚ୍ଛାବତୀ ।
ଚୁଠ ସଙ୍ଗେ କେସନେକେ[3] ହୋଇଲା ପୀରତି । ୫ ।
ଦ୍ରାପକ ଦେଶର[4] ସେ ମଦନବ୍ରହ୍ମ ସୁତେ ।
ଚୁଣ୍ଡବ୍ରହ୍ମ ବୋଲି କରି ତାହାର ତନୟେ । ୬ ।

---

୧ । ଗଉରୀ ନନ୍ଦନ ହେବା ଅଧିକ ସଙ୍ଗତ । ୨ । ତୁମ୍ଭ ହେଲେ ଅର୍ଥ ଅଧିକ ସୁସ୍ପଷ୍ଟ ହେବ । ୩ । 'କେସନକେ' ପ୍ରୟୋଗ ପ୍ରାଚୀନ ଓଡ଼ିଆ କାବ୍ୟରୁ ମିଳେ ।

୪ । 'ଦର୍ପକ' ପାଠ ଥିବାର ପ୍ରମାଣ ପଣ୍ଡିତ ବିନାୟକ ମିଶ୍ରଙ୍କ ଓଡ଼ିଆ ସାହିତ୍ୟ ଇତିହାସରୁ ମିଳେ ।

ପ୍ରତ୍ୟକ୍ଷେ* ମଦନ କ ହୋଇଛନ୍ତି ଅବତାର ।
ବଦ୍ୟାବନ୍ତ ରସିକ ସୁଜାଣ ଭଗ୍ୟ ଧୀର । ୭ ।
ଦାନେ ଖଣ୍ଡେ ନବାଣି ଯେ ସାମର୍ଥ ଅଛଇ ।
ନୃପତପଣକୁ² ନଜ ରାଜ୍ୟକୁ ଖଟଇ । ୮ ।
ନନ୍ଦନର ଲକ୍ଷଣ ଦେଖି ନୃପବର³ ।
ପାତ୍ର ମନ୍ତ୍ରୀ ଯେତେ ରଜା କଲକ ବିଗ୍ଭର । ୯ ।
କୁମାରକୁ କନ୍ୟା ନଖୋଜ କର ବରଧର ।
କୁଳୀନ ସୁନ୍ଦର ତା ସମାନେ⁵ ପଞ୍ଚାନ୍ତର । ୧୦ ।
ସୁଜାଣ ମନ୍ତ୍ରୀ ବେଗେ ସ ଦୂତ ବରଗିଲ ।
ଉତ୍ତର ଦକ୍ଷିଣ ଯେ ପଶ୍ଚିମ ଦିଗ ଗଲ । ୧୧ ।
ପୂର୍ବଦିଗକୁ କେବଣ ଦୂତ ଚଳିଗଲେ ।
ଯେ ଯାହାର ଦେଶେ ଦେଶେ ଯାଇଣ ଖୋଜିଲେ । ୧୨ ।
ବଣିକ⁴ ଧାର୍ମିକ ଯେ କନ୍ୟାନ୍ତମାନ⁵ ଲେଢ଼ି ।
ଚିତ୍ରପଟ ଲେଖାଇଣ ଆସନ୍ତ ବାହୁଡ଼ି । ୧୩ ।
ଯେ ଯାହାର ଦେଶୁଂ ଆସି ମିଳିଲେକ ଗୃର ।
କନ୍ୟାଙ୍କ ବାରତା କହୁ ମନ୍ତ୍ରୀଙ୍କ ଆଗର । ୧୪ ।

---

* । ପ୍ରତେକ୍ଷେ (ପୋଥିପାଠ)

୨ । 'ନୃପତପଣରେ' ଅଧିକ ସଙ୍ଗତ ।

୩ । ନୃପବର (ପୋଥିପାଠ) । ୮ । ତା ସମନେ୍ୟ (ପୋଥିପାଠ)

୧ । ବଣିକ—ସଦ୍‌ବଂଶଜ । ୧° । କନ୍ୟାନ୍ତ—କନ୍ୟାମାନଙ୍କୁ, ଏପର ପ୍ରୟୋଗ (ଦ୍ୱିତୀୟା ବହୁବଚନ ଅର୍ଥରେ) ପ୍ରାଚୀନ କାବ୍ୟରେହିଁ ଦେଖିବାକୁ ମିଳେ ।

ଶୁଣି ମନ୍ତ୍ରୀବର ରାଜା ଛାମୁରେ ଜଣାଇଂ ।
ଦୂତ ବରଗିଣ କନ୍ୟା ଖୋଜିଲ ଗୋସାଇଂ । ୧୫ ।
ନୃପତି ବୋଇଲେ ବୃହୁବ୍ରଦ୍ଧଙ୍କୁ ଅଣାଅ ।
ତାର ମନକୁ ଖଟିଲେ ବିଭା ସେ କରାଅ । ୧୬ ।
ଶୁଣିକରି କୁମର ପାଶକୁ ଚଳିଗଲେ ।
ଯହିଂ ଯେତେ କନ୍ୟା ନେଇ ଚିତ୍ରପଟ ଦେଲେ[11] ।୧୭।
କୁମର ବୋଇଲ ଯେ ବିଦ୍ୟାରେ ଗୁଣବନ୍ତ ।
ସୁଜାଣ ସୁନ୍ଦରୀ ଯେହୁ ପଣ୍ଡିତ ମହତ୍ୱ ଯେ । ୧୮ ।
ମୋର ମନ ହରିବ ଯେ ବିଦ୍ୟାରେ ଗରିଷ୍ଠ ।
ସୁନ୍ଦର ସୁମୂର୍ତ୍ତି[12] କାମିନୀଙ୍କ ପରେ ଶ୍ରେଷ୍ଠ ଯେ । ୧୯ ।
ଏମନ୍ତ କନ୍ୟା ହୋଇଲେ ହୋଇବ ବରଣ ।
ସରୂପ[13] କହିଲ ତୁ ସଚିବ ଏହା ଶୁଣ ହେ । ୨୦ ।
ଚିତ୍ରପଟମାନ ତା ନୟନେ ନ ରହିଲ[14] ।
ଯେତେଣେ ମୋର ପ୍ରୟୋଜନ[15] ନାହିଂ ସେ ବୋଇଲ[16] ।୨୧
ଏସନ ବଚନ ସେ ପାତ୍ରହିଂ ଶୁଣିଗଲା ।
ରାଜାଙ୍କ ଆଗରେ ଯାଇ[17] ସମସ୍ତ କହିଲା । ୨୨ ।
ଶୁଣିଣ ମଦନବ୍ରହ୍ମ ମନରେ ବିସ୍ମୟେ[18] ।
କୁଳକୁ କଳଂକ ପୁତ୍ର ହୋଇଲା ନିଷ୍ଟୟେ[19] । ୨୩ ।

---

୧୧ । ଦେଲେହେଂ (ପୋଥିପାଠ)

୧୨ । ଶୁମୂର୍ତ୍ତି ( ପୋଥିପାଠ) । ୧୩ । ସ୍ୱରୂପ' ଶୁଦ୍ଧପାଠ ।
୧୪ । ନରହିଂ ଲେଂ ( ପୋଥିପାଠ) । ୧୫ । ପ୍ରିୟୋଜନ (ପୋଥିପ ଠ)
୧୬ । ବୋଇଂଲ (ପୋଥିପାଠ) । ୧୭ । ଯାଇଂ (ପୋଥିପାଠ) ।
୧୮ । ବିସ୍ମୟେ ( ପୋଥିପାଠ ) । ୧୯ । ନିଶ୍ଚୟେ ( ପୋଥିପାଠ ) ।

ସ୍ୱେମନ୍ତ ବୋଲଣେ କନ୍ୟା ସବୁଠାରେ ଖୋଜ ।
ନ ଦେଖିଣ କୁମର ମନକୁ ନ ଭଜ ହେ । ୨୪ ।
ଦଇବେଣ ବୃଦ୍ଧବ୍ରାହ୍ମ ବଚନ ଅଛଇ ।
ସୁନ୍ଦର ପଟେଣେ[20] କାମଦେବକୁ ଖଟଇ ହେ । ୨୫ ।
ସ୍ୱେମନ୍ତ କୁମର ମନ ହରିବ ଯେ ନାରୀ ।
ବିଧାତା ଗଢ଼ିଛନ୍ତି ତାହା[21] ଅତି ଯତ୍ନ କରି ହେ । ୨୬ ।
କନ୍ୟାମାନ ଯେତେଠାରୁ ଖୋଜିଣ ଅଣନ୍ତି ।
ବୃଦ୍ଧବ୍ରାହ୍ମ ଚିତ୍ତକୁ ସେ କେହି ନ ଯୋଗାନ୍ତି ହେ । ୨୭ ।
ରାଜନ ମନରେ ତହିଁ କୋପ ପ୍ରଜଳିତ[22] ।
ରାଜ୍ୟରୁ ବାହାର ହୋଇ ଯାଉ ମୋର ସୁତ ହେ । ୨୮ ।
ମୋ ରହୁଁ ଗଲେଷ୍ଟୁ ଯେହ୍ନ ମାହାରାଜାମାନେ ।
କୁଳୀନ ସମସ୍ତ ଶୋଭା ଅତି ବଦ୍ୟମାନେ ହେ । ୨୯ ।
ଏମନ୍ତ ନୃପତି ଝିଅ ନରୁଚିଲା ଯହିଁ ।
ତାହାର ଇଚ୍ଛା ସେ ବରି ହଉ ଯହିଁ ତହିଁ ହେ । ୩୦ ।
ସ୍ୱେମନ୍ତ ବଚନ ଯହୁଁ କୁମର ଶୁଣିଲା ।
ମନରେ ଅନେକ ଚିନ୍ତା ନଥିବ[23] ବୋଇଲା ହେ । ୩୧ ।
ମୋ ମନ ନ ଜାଣି ପିତା ବୋଇଂଲେ ସ୍ୱେମନ୍ତ ।
ଆନ ରାଜ୍ୟ ଯିବ ବୋଲି ବରୁରଇ ଚିତ୍ତ[24] ହେ । ୩୨ ।

---

୨୦ । ପଟେଣେଣ (ପୋଥିପାଠ) । ୨୧। ଏଠାରେ 'ତାହା' ବଦଳରେ 'ତାକୁ' ହେବା ଅଧିକ ସଙ୍ଗତ । ୨୨ । ପ୍ରଜ୍ୱଳିତ ଶୁଦ୍ଧପାଠ ।

୨୩ । ଏ ପଦଟିର ଅର୍ଥ ଆଦୌ ସୁସ୍ପଷ୍ଟ ନୁହେଁ । ୨୪ । ଚିତେଂହେ ପୋଥିପାଠ)

ଯେମନ୍ତେ ଦିବସ ଯାଇ ନିଶି ପରବେଶ ।
ଗୃହବ୍ରହ୍ମ ପାଇଅଛି ମନେ ବଡ଼ ତ୍ରାସ[୧୫] ହେ । ୩୩ ।
ରାଜ୍ୟ ସମ୍ପଦକୁ ତୁଚ୍ଛ ହାତେ ଘେନି ଦଣ୍ଡ ।
ନବନ୍ଧୁଂ ବାହାର ହୋଏ ମନେ ପରଚଣ୍ଡ ହେ । ୩୪ ।
କଛି ଧନ-ଦ୍ରବ୍ୟ-ରତ୍ନ ଦିସନେ ପୂରାଇ ।
ସୋମଲଡ଼ୁ ହେଖ ଲଡ଼ୁ ଦେନି ରାଜେଣ ଗମଇ ହେ ।୩୫।
ସେହୁ କଟକର ରାଜା ଏକ ଚକ୍ରବର୍ତ୍ତୀ[୧୬] ।
ସୁବୁଦ୍ଧି[୧୭] ପଣ୍ଡିତ ସେ ଧାର୍ମିକ ନରପତି ହେ । ୩୬ ।
ସାତଶ ବାଅନ କବି ଆସ୍ଥାନେ[୧୮] ବସନ୍ତି ।
ରାଜନ ପଣ୍ଡିତ ସେ ଛପାୟେ ଚକ୍ରବର୍ତ୍ତୀ ହେ । ୩୭ ।
ସେ ରାଜା କଟକେ ଗୃହବ୍ରହ୍ମ ଯେ ପ୍ରବେଶି ।
ନଗ୍ର ପରିମଳ ଦେଖି ମନରେ ହରଷ ହେ । ୩୮ ।
ସୁବର୍ଣ୍ଣରେଖା ଯେ ନାମେ ନଦୀ ବିଦ୍ୟମାନ ।
ଦେଖି ଗୃହବ୍ରହ୍ମ ତହିଁ କଲେକ ସ୍ନାହାନ ଯେ । ୩୯ ।
ନିତ୍ୟକର୍ମ ସାରି ସେ ରାଉତ[୧୯] ବେଶ ଧରି ।
ଦିବାନିଶି ବୁଲଇ କଟକେ ଫେରି ଫେରି ହେ । ୪୦ ।
କରୁଣାକର ନାମେଣ ଏକ ଦ୍ୱିଜବର ।
ରାଜା ସିଂଘଦ୍ୱାରେ ତାଙ୍କ ଗୃହଶାଳୀ ଘର ହେ । ୪୧ ।

---

୧୫ । ତ୍ରାସ—କଷ୍ଟ, 'ତ୍ରାସ', 'ପରାସ' ଆଦି ପ୍ରାଚୀନ ପ୍ରୟୋଗ ଅଦ୍ୟାପି ମୁଖରୁ ଶୁଣାଯାଏ ।

୧୬ । ଚକ୍ରବର୍ତ୍ତୀ ( ପୋଥିପାଠ ) । ୧୭ । ସୁବୁଧି ( ପୋଥିପାଠ) ।

୧୮ । ଆସ୍ତାନେ ( ପୋଥିପାଠ )

୧୯ । ରାଉତ = ଅଶ୍ୱାରୋହୀ ସୈନ୍ୟ, ପ୍ରାଚୀନକାଳରେ ରାଜାମାନେ ବିଚକ୍ଷଣ ଯୋଦ୍ଧାଙ୍କୁ 'ରାଉତ' ଉପାଧିରେ ଭୂଷିତ କରୁଥିଲେ ।

ଇଚ୍ଛାବତୀ କୁମାରୀଙ୍କ ବିଦ୍ୟା ପଢ଼ାବନ୍ତି ।
ଶାସ୍ତ୍ର ସଙ୍ଗୀତ ବିଦ୍ୟାମାନ ଶିଖାବନ୍ତି ହେ । ୪୨ ।
ଅଷ୍ଟାଦଶ ପୁରାଣ ସ୍ମୃତି[୩୦] କରି ଆଦି ହେ ।
ଯେ ଯାହା ଲୋଡ଼ଇ ସେ ସେ ବିଦ୍ୟାରେ ସମାଧି ହେ । ୪୩
ଦେଖିଲେକ ବୈକଶାଳା ଝିଅ ଇଚ୍ଛାବତୀ ।
ପଢ଼ୁ ଅଛି କୋଟିଏ ଚନ୍ଦ୍ରମା ଜିଣି[୩୧] ଜ୍ୟୋତି ହେ । ୪୪ ।
ତାହା ଦେଖି ଗୁରୁବ୍ରହ୍ମ ଧଇର୍ଯ୍ୟ ଉଡ଼ିଲା ।
ଚନ୍ଦ୍ରକୁ ଦେଖିଣ ଚନ୍ଦ୍ରମଣି ଝଟକିଲା ହେ । ୪୫ ।
ନ ଚଳଇ ନୟନ ଅଧିର ତାର କାୟେ ।
ଇଚ୍ଛାବତୀ ବିଦ୍ୟାସାର କୁମରକୁ ପୁଛେ ହେ । ୪୬ ।
ବିଚକ୍ଷଣ ଦେଖି ତାକୁ ପଚାରନ୍ତି ଗୁରୁ ।
କାହାର ନନ୍ଦନ ତୁ ଅଇଲୁ କେତେ ଦୂରୁ । ୪୭ ।
ସରୂପ[୩୨] କରି କହ ନକର ମନେ ଭ୍ରାନ୍ତି ।
ନୃପତି ନନ୍ଦନ ତୁକ ଅଟୁ ନରପତି ଯେ । ୪୮ ।
ଶୁଣି ଦ୍ରହସିତ[୩୩] ହୋଇ କହଇ କୁମର ।
ସାବଧାନେ ଶୁଣ ଗୁରୁ ମୋହୋର[୩୪] ଉତ୍ତର ହେ । ୪୯ ।
ଦ୍ରାପକ ଦେଶର ଯେ ମଦନ ବ୍ରହ୍ମ ରାୟେ ।
ତାହାଂକର ପାସର ମୁଂ ଅଟଇ ତନୟେ ହେ । ୫୦ ।

---

୩୦ । ସ୍ମୃତି=ସ୍ମୃତି ଅର୍ଥରେ । ପ୍ରାଚୀନ କାଳରେ ବାଳକ ବାଳିକା ନିର୍ବିଶେଷରେ 'ସ୍ମୃତି' ଶାସ୍ତ୍ର ପାଠ ଶିକ୍ଷାର ଏକ ବିଶେଷ ଅଙ୍ଗ ଥିଲା ।

୩୧ । ଚନ୍ଦ୍ରମା ଜାଣି ଜ୍ୟୋତି ( ପୋଥିପାଠ )

୩୨ । ସରୂପ=ବସ୍ତୁତ ସ୍ୱବରେ ।

୩୩ । ଦ୍ରହସିତ=ଦରହସିତ ପଦର ପଦ୍ୟଶୈଳୀ ।

୩୪ । ମୋହୋର ( ପୋଥିପାଠ )

ସେ ନଗ୍ର ସୁବାହୁ ରାଜା ଜୁର[୩୫] କରି ନେଲା ।
କେତ୍ହୁ ପଳାଇଲା କେତ୍ହୁ ଯୁଦ୍ଧରେ[୩୬] ପଡ଼ିଲା ହେ ।୫୧।
ପିତା ମୋର ମହାଯତି ଯୁଦ୍ଧରେ ପଡ଼ିଲା ।
ତେଣୁଂ କରି ଅଇଲି ମୁଂ ବୋଲଣ ବୋଇଲା ହେ । ୫୨ ।
ମହାରାଜା ଭେକ ଯେ ଉପାସୁ ଚକ୍ରବର୍ତ୍ତୀ ।
ଅନେକ ହୁରୁଂ ଶୁଣିଲି ଯେହ୍ମାଂକର କୀର୍ତ୍ତି[୩୭] ହେ । ୫୩ ।
ମୋତେ ଯେ ପୋଷିବ ତାକୁ ସେବା କରୁଥିବି ।
ଯେ ଯାହା କହିବ ମୁହିଂ କାର୍ଯ୍ୟ ସେ କରିବ ହେ । ୫୪ ।
ଗୁରୁସ୍ତେ ବୋଇଲେ ବାବୁ ଶୁଣ ମୋ ବଚନ ।
ଆମ୍ଭ ଘରେ ଅନ୍ନ[୩୮] ପାଣି କରିବ ଭୋଜନ । ୫୫ ।
କେମନ୍ତ ପ୍ରକାରେ ତୁମ୍ଭେ ନେମ[୩୯] ଧନକାଳ ।
ଆମ୍ଭର ଆଗରେ ଫେଡ଼ି କହ ତୁ ନିକର ହେ । ୫୬ ।
କୁମର ବୋଇଲା ତୁମ୍ଭେ ଶୁଣ ଧର୍ମତାତ ।
ମୁ ହିଁ ଧର୍ମପୁତ୍ର ସେବା କରିବ ନିଅନ୍ତ ହେ । ୫୭ ।
ଗୁରୁସ୍ତେ ବୋଇଲେ ତୋର ପିତା ମାତା ଶୂନ୍ୟ ।
ଆଜହୁଂ ହୋଇଲୁ ମୋର ଧର୍ମର ନନ୍ଦନ ହେ । ୫୮ ।
ଦିନବେଳ ଭୁଞ୍ଜି ପଢୁଥିବ ଇଚ୍ଛା ତୁଲେ ।
ଧର୍ମ ବୃଷ୍ଟ ବଦା । ରେହ୍ର ଗୁରୁ ନାମ ଦେଲେ ହେ । ୫୯ ।
ସେହ୍ମା ଶୁଣି ଇଚ୍ଛାବନ୍ତୀ ମନରେ ହରଷ ।
ସଙ୍ଗକୁ ପାଇଲି ମୁହିଂ ପୁରାଣ ପୁରୁଷ ହେ । ୬୦ ।

---

୩୫ । ଜୁର (ପୋଥିପାଠ) ଜୁର=ବଳାତ୍କାରରେ ଅପହରଣ କରିବା ।
୩୬ । ଯୁଝ (ପୋଥିପାଠ) । ୩୭ । କତ (ପୋଥିପାଠ) କାନ୍ତି 'କାନ୍ତି' ହେବା ସଙ୍ଗତ । ୩୮ । ଅଣ୍ଣଂପାଣି (ପୋଥିପାଠ) । ୩୯ । ନେମ=ନେବ ।

ପଣ୍ଡାଙ୍କ ସାଙ୍ଗେ କୁମର ନିଜ ଗୃହେ ଗଲେ ।
ଆପଣା ମନ୍ଦିରେ ଯାଇଂ ପ୍ରବେଶ ହୋଇଲେ । ୬୧ ।
ପାଣି ଝରି ହସ୍ତେ ଧରି ବ୍ରାହ୍ମଣୀ ବାହାର ।
କୁମରକୁ ଦେଖିକରି ପୁଚ୍ଛଇ ଉତ୍ତର ସେ । ୬୨ ।
ଅପୂର୍ବ କୁମର ଗୋଟି କାହିଁ ଯେ ଅଇଲ ?
ପଣ୍ଡାଏ ବୋଇଲେ ଯେହ୍ନା ମାତା ପିତା ମଲ । ୬୩ ।
ଆଙ୍ଗୁଂ ଯେ ହୋଇଲ ଯେବେ ଆମ୍ଭର ନନ୍ଦନ ।
ଧର୍ମ ପୁତ୍ର ପଣେ ଯେବେ ପାଳିବା ନନ୍ଦନ । ୬୪ ।
ଶୁଣିକରି ପଣ୍ଡିଆଣୀ ଉପତ ହୋଇଲେ ।
ପୁତ୍ରର ସମାନେ[୪୦] ତାଙ୍କୁ ପ୍ରତି ଯେ ପାଳିଲେ ଯେ । ୬୫ ।
ପିଠାପଣା ପଇଡ଼ ଗୋଟିକା ଦୁଧ ସର ।
ପଂଚାମୃତ ଯୋଗାଡ଼ ସେ କଲେକ ଆହାର । ୬୬ ।
ଭୁଞ୍ଜିଣ କୁମର ମନେ ଅନେକ ସନ୍ତୋଷ ।
ଧର୍ମ[୪୧] ପୁତ୍ର ପଣେ ରହିଲେ ଗୃହ ପାଶ ହେ । ୬୭ ।
ରଜନୀ ପ୍ରକାଶ ହୋନ୍ତେ ଉଦେ ଦିନକର ।
ନିତ୍ୟକର୍ମ ସାରି ଗୃହେ ବିଦ୍ୟାକୁ ବାହାର ହେ । ୬୮ ।
ହସ୍ତେ ଖଡ଼ି ଘେନିଣ କୁମର ଚଳିଗଲ ।
ଓଝାଂକ ବଚନେ ଇଚ୍ଛା ପାଠୁଶେ ପଢ଼ିଲ । ୬୯ ।
ମୃଦୁସୁଲି[୪୨] ହକାରିଣ ଗୁରୁ ଅଗ୍ୟାଂ ଦେଲେ ।
ଯେତେ ବେଳ ଯାନ୍ତେ ଇଚ୍ଛା ପଢ଼ିବ ନଇଲେ ହେ ।୭୦।
ଅଗ୍ୟାଂ ପାଇ ମୃଦୁସୁଲି ଚଳିଗଲ ଝରେ ।
ତୁରନ୍ତେ କହିଲ ଯାଇ ଇଚ୍ଛାର ଘମୁରେ ଯେ । ୭୧ ।

---

୪୦ । ସମାନ୍ୟେ (ପୋଥିପାଠ) । ୪୧ । 'ଧରମ ପୁତ୍ର' ହେଲେ ।
୪୨ । ମୃଦୁସୁଲୀ=ଅନ୍ତପୁର ଦାସୀ ।

ମୈତେଣବଲ ଯାଏନ୍ତୁଂ ମାଏଗୋ ପଢ଼ିଛ ନଗଲ;
ଗୁରୁ ଚନ୍ଦ୍ରଛନ୍ଦ୍ର[୫୩] ବେଗ[୫୪] କରି ଯିବା ଗୁଲ ଗୋ ।୭୨।
ମୋଶୋଣ୍ଣାଂ[୫୫] ଯାଏ ଗୋ ମାଯେ ଚଳିଯିବା ଖେରେ ।
ଅପୂର୍ବ କୁମର ଅଛୁ ଗୁରୁର ସଗରର ଗୋ । ୭୩ ।
ଶୁଣିଣ କୁମାରୀ ଚେଜ ହୃଦୟରେ ଡେଉ ଦେନ,
ଗୃହଶାଳୀ ପୁରେ ଯାଇ ମିଳିଲେ ତରୁଣୀ ଯେ[୫୬] । ୭୪ ।
କୁମରକୁ[୫୭] ଦେଖିଲ ନବୀନ କାମ ପ୍ରାୟେ ।
ମଦନ ଆରତେ କମ୍ପେ[୫୮] ଅଧର ତା କାଯେ ଯେ । ୭୫ ।
ମନେ ମନେ ପୁଣି ଗ୍ରାମା କରଇ ବିଗୁର ।
ମୋହୋର ସାଦ୍ରିଂଶେ[୫୯] ଆସି ମଳଲକ ବର ଯେ ।୭୬।
ଇଚ୍ଛାଏନ୍ତୁଂ ବରବ ବୋଲି ମନେ କଲ ଇଚ୍ଛା ।
ସିଦ୍ଧକର[୬୦] ଧାତା ଯେବେ ମୋହୋର ମନବାଞ୍ଛା ହେ ।୭୭।
ଯେତେ ବୋଲି ଇଚ୍ଛାବତୀ ଚଢ଼ିଣ ବସିଲେ ।
ଶ୍ରୀ[୬୧] ଆଦେବୀ ଲେଖିଣ ଗୁରୁଙ୍କୁ ମାନ୍ୟ କଲେ ହେ ।୭୮।
ମନବାଞ୍ଛା ସିଧ ହଉ ବୋଲିଣ ବୋଇଲେ ।
ଗୃହକୁ ସଂଗତେ ଘେନ ପଢ଼ିଣ ବସିଲେ ହେ । ୭୯ ।

---

୫୩ । ଚନ୍ଦ୍ରଛନ୍ଦ୍ର = ବିରକ୍ତ ହେଉଛନ୍ତି । ୫୪ । ବେଗକର = ଶୀଘ୍ର ।
୫୫ । ଶୁଦ୍ଧପାଠ ମଣୋଷ୍ଠ ଅର୍ଥାତ୍ ନିଜ ପରିବାର ଲୋକ ।
୫୬ । ଘେ (ପୋଥିପାଠ) କିନ୍ତୁ 'ଯେ' ହେବା ସଙ୍ଗତ ।
୫୭ । କୁମରୁ (ପୋଥିପାଠ) ୫୮ କମ୍ପେ (ପୋଥିପାଠ)
୫୯ । ସଦୃଶ ଅର୍ଥରେ ବ୍ୟବହୃତ ।
୬୦ । ପୋଥିରେ ଏହି ପଙ୍କ୍ତି 'ଯେବେ ମୋହୋର ମନବାଞ୍ଛା ସିଦ୍ଧକର ଧାତା ହେ' ବୋଲିଅଛି । ୬୧ । 'ଶ୍ରୀ' ଶବ୍ଦ ଲକ୍ଷ୍ମୀ ଓ ସରସ୍ୱତୀ ଅର୍ଥରେ ବ୍ୟବହୃତ ହୁଏ ।

ବିଦ୍ୟା ପଢ଼ିବାକୁ ତୁଷ୍ଟ ନବଳାଇ*' ମନେ;
ନରେଶ ବୃନ୍ଦଂକୁ ଦେଖିକା କୁମାରୀ ବଦନ ଯେ । ୮୦ ।
ଓଝାଙ୍କ ଗମନର ଇଚ୍ଛା ହୋଇଲା ଗୋସାଇଁ ।
କାହାର ନନ୍ଦନ ଏସୁ ଅଇଲେ କାହିଁପାଇଁ ଯେ । ୮୧ ।
ଓଝାଏସୁ ବୋଇଲେ ଭୂପେ ଶୁଣ ନେମାଦେଈ ।
ଅମ୍ଭର ସେ ଧର୍ମ ପୁତ୍ର ତୁମ୍ଭ ଗୁରୁ ଭାଇ ଗୋ । ୮୨ ।
ଏହା ଶୁଣି ଭକ୍ତାବତୀ ସନ୍ତୋଷ ହୋଇଲେ ।
କୁମର ସଙ୍ଗତେ ବିଦ୍ୟା ଶିକ୍ଷା ସେ କଲେ ଯେ । ୮୩ ।
ସାହିତ୍ୟ* ସଙ୍ଗୀତ ବିଦ୍ୟା ତାକ୍ୟ ପଢ଼ନ୍ତି ।
ଦୁହେଁ ଦୁହିଂକ ବିଦ୍ୟାରେ ସମାନ* ଅଟନ୍ତି ଯେ । ୮୪ ।
ଏହିମତ ନିତଦିନ ବିଦ୍ୟା ପଢ଼ୁଥାନ୍ତି ।
ଦଇବ ଯୁ କ୍ରମ ଯାହା ଭେଟାଇ ଅଛନ୍ତି ହେ । ୮୫ ।
କୁମାରୀ କୁମର ମନେ ଅଭେଦ ପୀରତି ।
ଦଣ୍ଡେ ନ ଦେଖିଲେ ଦୁହେଁ ଷଟେଣି ନିବୃତନ୍ତି* ହୋ ।୮୬
କରୁଣାସାଗର ପ୍ରଭୁ କମଳଲୋଚନ ।
କହେ ବନମାଳୀ ମୋର ଦୋଷ ଯେ ନଧେନ ହୋ ।



୫୨ । ନବଲଇ (ପୋଥିପାଠ) ।
୫୩ । ଶାକ୍ଷିତ (ପୋଥିପାଠ) । ୫୪ । ଶମାନ୍ୟ (ପୋଥିପାଠ) ।
୫୫ । ନିବୃତନ୍ତି — ବ୍ୟାକୁଳ ହୁଅନ୍ତି ।

# ଦ୍ୱିତୀୟ ଛାନ୍ଦ

## ରାଗ—ବରାଡ଼ି

ବନ୍ଦଇଁ ଯେ ଗଣପତି ଗଜଶିର ବାଳ
ଶୀର୍ଷେ ଶ୍ରୀ ଚନ୍ଦନ ଚାର ଶୋହଇ କପୋଳ ।
ଦକ୍ଷିଣ ଦ୍ୱାର ମଣ୍ଡନ ସଦାଶିବ ସୁତ ।
ମୋତେ ତୁ ପ୍ରସନ୍ନ ହୁଅ ଦେବ ଗଣନାଥ । ୨ ।
ଅନୁଗ୍ରହଂ[୧] କର ମୋତେ ପାର୍ବତୀ ତନୟ ।
ଗୃଠଇଚ୍ଛାବତୀ କଥା କରିବି ଉପାୟେ । ୩ ।
ଯେମନ୍ତେ ତରୁଣୀ ଦେବକନୀ ପଢୁଥାନ୍ତି ନିତ ।
ପଢନ୍ତି ସକଳ ବିଦ୍ୟା ଗୁରୁଙ୍କ ସଙ୍ଗତ ।
ଏକଦିନେ ଇଚ୍ଛାବତୀ ପଢିବାର ବେଳେ ।
ହସ୍ତରୁ ଖସିଲା ଖଡ଼ି ଗଡ଼ିଗଲା ତଳେ । ୫ ।
ବୋଲଇ କୁମାରୀ ତୁମ୍ଭେ ଶୁଣସି ହେ ଗୃଠ ।
ଖଡ଼ି ଗୋଟି ପଡ଼ିଗଲା ଦିଅ ମୋର ହସ୍ତ । ୬ ।
ଇଚ୍ଛାର ବଚନେ ଗୃଠ ବୋଲଇ ଉତ୍ତର[୨] ।
ଖଡ଼ି ଯେବେ ତୋଳି ଦେବି ସତ୍ୟ ମୋତେ କର । ୭ ।
ଗୃଠର ବଚନେ ବାଳୀ କଲା ସନମତ ।
ଖଡ଼ି ଗୋଟି ତୋଳିଦିଅ ହେବ ମୋର ସତ୍ୟ । ୮ ।
ଯେମନ୍ତ ବୋଲନ୍ତେ ଗୃଠ ଓହ୍ଲାଇଣ[୩] ଗଲେ ।
ଖଡ଼ିଗୋଟି ତୋଳି ଇଚ୍ଛାବତୀ କରେ ଦେଲେ । ୯ ।

---

୧ । ଅନୁଗ୍ରହ (ପୋଥିପାଠ) । ୨ । ଉତ୍ତର ( ପୋଥିପାଠ ) ।
୩ । ଓହ୍ଲାଇଣ । ( ପୋଥିପାଠ ) ।

ଚଢ଼ନ୍ତ ହରଷେ ତହିଂ ନୃପତି କୁମାରୀ
ମଣୋହ୍ଲାଂ ନାମେନ୍ଦ୍ର ବାମା ଗଲ ଝେର କରି । ୧୦ ।
ଗୃଷ୍ଟ ଭୃଙ୍ଗିଣ ଗଲ ଚୁଟୁଙ୍କ ସଙ୍ଗରେ ।
ମୋଣୋହ୍ଲାଂ ସାରଣ ବାମା ଗଲ ଧାଡକାରେ୪ ।୧୧।
ବଚ୍ଛରଇ କାହୁଁକ ସେ କରାଇଲ ସତ୍ୟ ।
ଯେସନ ବଚ୍ଛର ବାମା ଗମଇଂ ତୁରିତ । ୧୨ ।
ଗୃଷ୍ଟଶାଳୀ କୋଣ ବାଳୀ ଅଛୁ ଗୋପ୍ୟ ହୋଇ ।
ଯେସନ ସମୟେ ଗୃଷ୍ଟ ମିଳିଗଲେ ଯାଇ । ୧୩ ।
କେହି କେଉଁ ନାହିଂ ବୋଲ ଗୃହାଁନ ନରେଶ ।
ପଛଆଡ଼େ ଥାଇ ଇଚ୍ଛା ବୁଜିଲକ ଆଖି । ୧୪ ।
ନଜାଣଇ କଟ୍ୟ ତୁମ୍ଭେ କହ ବୋଲି ଗୃଷ୍ଟ ।
ନ ଛାଡ଼ଇ ଇଚ୍ଛାବତୀ ଉଚ୍ଛୁଡ଼ଇ ହସ୍ତ । ୧୫ ।
ଛଡ଼ାଇ ନ ପାରି ଗୃଷ୍ଟ ହୋଇଲ ନସତ୬ ।
ନ ଛାଡୁ ବୋଲଣ ତୋତେ ମୋହର ଦପତ । ୧୬ ।
ଯେସନ ସମୟେ ହସ୍ତ କାଢିଲ ତୁରିତ ।
ନେଉଛି ଗୃହିଁଲ ପଛେ ନୃପତି ଦୋହିତ । ୧୭ ।
ହସ ହସ ହୋଇ ବାଳୀ ବୋଲଇ ଉତ୍ତର ।
ସ୍ୱରୂପ କରଣ ଗୃଷ୍ଟ କହ ମୋ ଆଗର । ୧୮ ।
ବୋଲନ୍ତି କୁମାରୀ ତୁମ୍ଭେ ଶୁଣସି ହେ ଗୃଷ୍ଟ,
ଖଡ଼ ତୋଳି ଦେଲ ବେଲେ କରାଇଲୁ ସତ୍ୟ । ୧୯ ।

---

୪ । ଧାଡକାରେ=ଶୀଘ୍ରେ, "ଦାରୁଜ ବାହା ଧାଡକାରେ" 'ଜଗବତ'
୫ । ଉଚ୍ଛଡ଼ଇଂ=ବଳାତ୍କାରେ ଛଡ଼ାଇ ।
୬ । ନସତ=ବଳହୀନ ।

କହନ୍ତି ସ୍ୱରୂପ ନୃପେ ଗୁପତ ନକର ।
ନ କହୁଣ ବୋଲଣ ତୋହେତ ସପଥ ନୋହର । ୨୦ ।
ଇଚ୍ଛାର ବଚନେ ନୃପେ ମଉନ ହୋଇଲା ।
ମନକୁ ସଙ୍କୋଚ କରି ଉତ୍ତର ନ ଦେଲା । ୨୧ ।
ମନେ ମନେ ଭାବୁଅଛୁ କି କହିବିଁ ବୋଲି ।
ନ ଜାଣିଣ ଅଜମିରେ[୮] ସତ୍ୟ କରାଇଲି । ୨୨ ।
ଯୁଗତେ ଅଛଇ ସେ ଯେ ନୃପତି କୁମାରୀ,
ଲେକଞଂ[୯] ବେଭାରେ ମୁହିଁ ଅଛଇ ଭିକାରୀ । ୨୩ ।
କହିଲେହେଂ ପୁଣ ମୋତେ କରୁଥାଇ ରାଗ ।
କି ବୋଲି କହିବ ମୁହିଂ ଇଚ୍ଛାବତୀ ଆଗ । ୨୪ ।
ନୃପତି ଶୁଣିଲେ ନିକ କଅଇବେ ମୋତେ ।
କୁମାରୀ ଆଗରେ ମୁହିଂ କହିବ କେମନ୍ତେ । ୨୫ ।
ସ୍ୱରୂପ କହିଲେ ମୋତେ ଯାହା ଇଚ୍ଛା କରୁ ।
ଇଚ୍ଛାବତୀ ହେତୁରେ ମୋ ସମ୍ପଦଣ ହରୁ । ୨୬ ।
ଯେସନ ବରୁର ନୃପେ ବୋଲଇ ବଚନ ।
ଯାହା ପଚ୍ଚରିଲ୍ଲ ଇଚ୍ଛା ସାବଧାନେ[୧୦] ଶୁଣ । ୨୭ ।
ହେଜଂ ଦିନୁ ସଂଗେ ତୋର ପଢୁଥାଇ ବସି ।
ଅହନିଶି ଗୁଣୁଥାଇ ମନେ ଶୁଭ୍ରକେଶି । ୨୮ ।
ତୁ ମୋର ଭାବମା[୧୧] ହେବୁ ମୁହିଁ ତୋର ନାହା
ନିରନ୍ତରେ ହୃଦେ ମୋର ଭାବୁଥାଇଂ ଯେହା । ୨୯ ।

---

୭ । 'କ କଦବ' ହେବା ସଙ୍ଗତ ।
୮ । ଅଜମିରେ (ବିନା ଉଦ୍ଦେଶ୍ୟରେ) ଶୁଦ୍ଧ ପାଠ ।
୯ । ଲେକଞ=ଲୌକିକ । ୧୦ । ସାବଧାନେ (ପୋଥିପାଠ)
୧୧ । ଭାବାମା (ପୋଥିପାଠ)

ଏହା ଶୁଣି ଇନ୍ଦୁମତୀ ହୋଇଲା ସନ୍ତୋଷ ।
ହସ୍ତ ଧରି ବୃଦ୍ଧକୁ ନେଇ ବସାଇଲା ପାଶ । ୩୦ ।
ଯାହା ତୁ ବୋଇଲୁ ବୃଦ୍ଧ ଚିନ୍ତା ତୁ ନ କର ।
ନିଶ୍ଚୟେ ଭାବିନୀ ମୁହିଁ ହୋଇବି ତୋହର । ୩୧ ।
ତୋତେ ମୋତେ ଧାତା ଆଣି କରାଇଅଛି[୧୨] ଭେଟ ।
ଏ କଥାକୁ ମନେ କିଛି ନ ଧର ତୁ ବୃଦ୍ଧ । ୩୨ ।
ମୋହର ସାହୃଦେ[୧୩] ଧାତା ବର ଆଣି ଦେଲା ।
ମୁହିଂ ନିରେମାଟୀ ଭାଲି ତୋତେ ଭେଟାଇଲା । ୩୩ ।
ଇନ୍ଦୁମତୀ ବଚନେ ବୃଦ୍ଧ ବୋଲେ ଅନୁସରି ।
ମୁହିଂ ଭିକ୍ଷାବାସୀ ତୁମ୍ଭେ ନୃପତି କୁମାରୀ । ୩୪ ।
ଗୁରୁଙ୍କର ଠାରୁ ମୁହିଂ ମାଗି ଖାଇଂ ଅନ୍ନ[୧୪] ।
ନିଧନ ପୁରୁଷ ମୋର ହାତେ[୧୫] ନାହିଁ ଧନ । ୩୫ ।
ପିଙ୍ଗଳର ବସ୍ତ୍ରୋରୁ ଚନ୍ଦ୍ରଦ୍ୟନ୍ତ ମୋତେ ।
ସରୂପ ବଚନ ବାମା କହିଲଇଁ ତୋତେ । ୩୬ ।
ନିଦ୍ରବ୍ୟ ପୁରୁଷ ମୁହିଂ ମହାଦୁଃଖେ ଦୁଃଖୀ ।
ମୋହୋର କଷ୍ଟକୁ ଏକା ଧର୍ମହିଂ ସେ ସାକ୍ଷୀ । ୩୭ ।
ବୃଦ୍ଧର ବଚନେ ଇନ୍ଦୁ କହେ ପରିହାଇ ।[୧୬]
ଏମନ ଅଞ୍ଜନ[୧୭] ମନେ ଧରୁ କାହିଂ ପାଇଂ । ୩୮ ।

---

୧୨ । କାରଇଂଛୁ (ପୋଥିପାଠ) ।
୧୩ । ସାଦ୍ରୀସେ (ପୋଥିପାଠ)
୧୪ । ଅଣ୍ଣ ( ପୋଥିପାଠ ) । ୧୫ । ହାଥେ (ପୋଥିପାଠ) ।
୧୬ । ପରିହାଇ—ତୁଚ୍ଛଭାବରେ, 'ଏମୁନେ କେତେ ଶବ୍ଦ ମାନଙ୍କୁ ପରିହାଇ' "ନୃସିଂହପୁରାଣ" ।
୧୭ । ଅଞ୍ଜନ—ଭେଦଭାବ ଅର୍ଥରେ ବୋଧହୁଏ ବ୍ୟବହୃତ ହୋଇଛି ।

ବ୍ରହ୍ମେ ଯେ ବୋଇଲ ମୁହିଁ ନିର୍ଧନ ପୁରୁଷ ।
ସୀରତଧନ ଯେ ଥାଉଁ କରିବାଟି କିସ ? ୩୯ ।
ମହନ୍ତ ବଚନ କୃଷ୍ଣ ପାଷାଣର ଗାର ।
ନିର୍ଧନ ତୁ ଅଟୁ ମୋତେ ଅମୂଲ୍ୟ ଭଣ୍ଡାର । ୪୦ ।
ଯେଖୁ ଛାର ଜୀବନ ମୋର ଥିବ କେତେ ଦିନ ।
ତୁ ମୋର ଜୀବନ ମୁହିଁ କ କରିବି ଧନ । ୪୧ ।
ଗୁଂଆର[୮] ଯୁକ୍ତି ସିନା ଧନକୁ ମନ୍ତ୍ରଇ[୯] ।
ସୁଜାଣ ସୁହୃଦସ୍ତି ପ୍ରୀତି ପାଇଁ ଜୀବ ଦେଇ । ୪୨ ।
ମୁହିଁ ଯେବେ ପୂର୍ବେ ସେବା କରିଥିବି ହର ।
ତେବେ ସିନା କୃଷ୍ଣ ମୋର ଧରିବଇଁ କର । ୪୩ ।
ତୋତେ ମୋତେ ଧାତା ଆଣି କଲେ ଘଟଣ ।
ନିଜ ନୋହେ ମୋତେ ମାତାପିତାଙ୍କର ଗଣ । ୪୪ ।
ଇଚ୍ଛାର ବଚନେ କୃଷ୍ଣ ପରମ ସାନନ୍ଦ ।
ହୃଦଗତେ ସୁମରଇଁ ଶ୍ରୀରାମ ଗୋବିନ୍ଦ । ୪୫ ।
ହସି କୋଳାଗ୍ରତ କଲ ନୃପତ କୁମାରୀ ।
କୃଷ୍ଣ କଣ୍ଠେ ଲମ୍ବାଇଂଲ ନେଇ ପୁଷ୍ପମାଳୀ । ୪୬ ।
ତେବଣ ଜନେ ଯେକ ଠାବେ ପାଶେ ନାହିଁ କେହି ।
ଦରିଦ୍ରରେ କୋଟି ଧନ ଅନ୍ଧ ଚକ୍ଷୁ ପାଇ । ୪୭ ।
ଯେସନ୍ତ ସମୟେ ଗୁରୁ ମିଳିଗଲେ ଯାଇ ।
ଦେଖିଣ ପଡି ବସିଲେ ମହା ସୁଖ ପାଇ । ୪୮ ।

---

୮ । ଗୁଂଆର—ମୂର୍ଖ, ବୁଦ୍ଧିହୀନ ।

୯ । ମନ୍ତ୍ରଇ' ଏଠାରେ 'ମଙ୍ଗଳ' ଅର୍ଥରେ ବ୍ୟବହୃତ ହୋଇଅଛି ।

ସେହି ଧନୁ ବେନି ଜଣେ ଏକଚିତ୍ତ ମନ ।
ଯାହା ସେଠି ପ୍ରକାଶିତ କରନ୍ତି ଲେଖନେ । ୪୯ ।
ଏକମୁଖ ହୋଇ ଦୁହେଁ ବିଦ୍ୟା ପଢୁଥାନ୍ତି ।
ଚନ୍ଦ୍ରକୁ ଦେଖିଣ ଚନ୍ଦ୍ରମଣି ଝଟକନ୍ତି । ୫୦ ।
ଦଣ୍ଡେ ନ ଦେଖିଲେ ପ୍ରାଣ ନ ରହନ୍ତେ କେହୁ ।
ବେନି ଜଣଂକର ସେ ଅଟଇ ଏକ ଦେହ । ୫୧ ।
ଏମନ୍ତ ପ୍ରକାରେ ସେ କେତେହେଁ ଦିନଗଲା ।
ଦଇବେଣ ଗଣେଶ୍ବର ଚଉଠୀ ପଡ଼ିଲା । ୫୨ ।
ଚାଟକୁ ହକାରି ଗୁରୁ ବୋଲନ୍ତି ବଚନ ।
ପୂଜା କରିବାକୁ ଫଳ ପୁଷ୍ପ ତୋଳି ଆଣ । ୫୩ ।
କରପତ୍ର ଯୋଡ଼ି ଚାଟ ବୋଲଇ ଉତ୍ତର ।
ମୁଁ ଏକା କେମନ୍ତେ ଯିବ ସଂଗେ ଜଣେକର[10] । ୫୪ ।
ଶୁଣିକରି ଗୁରୁ ତାଙ୍କୁ ନ ଦେଲେ ଉତ୍ତର ।
ତାହାଂକ ସମ୍ମୁଖରେ ଇଚ୍ଛା ଯୋଡ଼ି ବେନି କର । ୫୫
ମୋତେ ପଠିଆଅ ମୁହିଁ ଚାଟ ସଙ୍ଗେ ଯିବ ।
ଫୁଲ ଫଳ ତୋଳି କରି ମୁହିଁ ଆଣି ଦେବ । ୫୬ ।
ତାହାଯେ ବୋଇଲେ ତୁମ୍ଭେ ଯାଅ ଫୁଲ ତୋଳି ।
ଶୁଣିଣ ଆନନ୍ଦ ହେଲା ଇଚ୍ଛାବତୀ ବାଳୀ । ୫୭ ।
ଚାଟ ଇଚ୍ଛାବତୀ ଦୁହେଁ ଚଳିଗଲେ ଖରେ ।
ପ୍ରବେଶ ହୋଇଲେ ଯାଇ ତୋଟାର[11] ଭିତରେ । ୫୮ ।

---

୧୦ । ସଂଗେ ଜଣେକର— ଅର୍ଥାତ୍ ମୋ ସହିତ ଅନ୍ୟ ଜଣେ ଯିବାକୁ ଅନୁମତି ଦିଅନ୍ତୁ । ଏଠାରେ କୁମାରର ଉଦ୍ଦେଶ୍ୟ, ଇଚ୍ଛାବତୀଙ୍କୁ ସଙ୍ଗରେ ନେବାପାଇଁ ।

୧୧ । ତୋଟା — ବଗିଚା ।

ପୁଷ୍ପ ତୋଳିବାକୁ କୃଷ୍ଣ ନବଳଇ ମନ ।
ଅନୁସରି ଚାହିଂଅଛନ୍ତି କୁମାରୀ ବଦନ । ୫୯ ।
ଚମ୍ପକ ବୃକ୍ଷରେ ବାଳୀ ଉଠିଲେ ଯାଇ
ପୁଷ୍ପ ତୋଳୁଅଛନ୍ତି ଡାଳି ଅଂକୁଡ଼ୀ ଲଗାଇ । ୬୦ ।
କୃଷ୍ଣ ଠିଆ ହୋଇଅଛନ୍ତି ସେହି ବୃକ୍ଷ ତଳେ ।
ପଡ଼ିଲା ପୁଷ୍ପ କୁମର କୋଳଇ ଅଞ୍ଚଳେ । ୬୧ ।
ଦକ୍ଷିଣ[୧୧] ପବନ ଯେ ବହଇଁ ଧୀରତର ।
ବାତଘାତେ ତନୁ ଯେ କମ୍ପଇ ଥରହର । ୬୨ ।
ଭୟ[୧୩] ପାଇ ତରୁଡ଼ାଳ ଧରେ ଶୁକ୍ଳକେଶୀ ।
ହୃଦରୁ ଅଞ୍ଚଳ ତାର ପଡ଼ିଲା ଖସି । ୬୩ ।
ତରୁତଳେ ଥାଇଂ କୃଷ୍ଣ ଦେଖିଲେ ଅନାଇ ।
ଦେଖିଲେ ଯୁବତୀର ହୃଦେ ବସ୍ତ୍ର ନାହିଂ । ୬୪ ।
ସ୍ୱେତକେଣ[୧୪] ସୁନ୍ଦରୀ ଯେ ନାହିଂ[୧୫] ପଟାନ୍ତର ।
ଦେବନକୁଚ କବା ଟାର ମଦନ ଭଣ୍ଡାର । ୬୫ ।
ଆବର ବିଟେଟେ ମଧ୍ୟା[୧୬] ଡମ୍ବରୁ ଆକାର ।
ତାହା ଚାହିଂ କୃଷ୍ଣ ମନେ ହୋଇଲେ କାତର । ୬୬ ।
ପଞ୍ଚୁବାଣ ତାର ଅଂଗେ ପିଡ଼ିଲା ମଦନ ।

---

୧୧ । ଦକ୍ଷିଣ (ପୋଥିପାଠ) । ୧୩ । ଭୟେ ପାଇଂ (ପୋଥିପାଠ) ।
୧୪ । 'ସ୍ୱେତକେଣ' ପରିବର୍ତ୍ତେ 'ସ୍ୱେତକେତ' ହେବା ଅଧିକ ସଙ୍ଗତ ।
୧୫ । ନାସ୍ତି ପଟାନ୍ତର (ପୋଥିପାଠ) କନ୍ତୁ 'ନାସ୍ତି ପଟାନ୍ତର' ବଦଳରେ 'ନାହିଁ ପଟାନ୍ତର' ହେବା ଅଧିକ ସଙ୍ଗତ, ତେଣୁ ମୂଳପାଠର ପରିବର୍ତ୍ତନ କରାଯାଇଛି ।
୧୬ । ମଧ୍ୟା—କଟୀ ଦେଶ । ନାରୀମାନଙ୍କ କଟୀର ନିମ୍ନ ଭାଗ ଓ ଊର୍ଦ୍ଧ୍ୱଭାଗ ଅପେକ୍ଷାକୃତ ସ୍ଥୂଳ ହୋଇଥିବା ବର୍ଣ୍ଣନା କବି ପରଂପରା ସମ୍ମତ ।

ଝଲିଣ ପଡଲ ଗୃହ ହୋଇ ଅଚେତନ[୨୭] । ୬୭ ।
ପବନ ରହବନ୍ତେ ବସ୍ତ୍ର ସମ୍ଭାଳିଲା ଇଚ୍ଛା ।
କ କରୁଛୁ[୨୮] ବୋଲ ଗୃହ ତାଙ୍କୁ କଲା ପୁଚ୍ଛା । ୬୮ ।
ଇଚ୍ଛାର ବଚନେ ଗୃହ ଉତ୍ତର ନଦେଲା ।
ନାହିଁ ବୋଲ କର ବୃକ୍ଷ ତଳକୁ ଗୃହାଁଲା । ୬୯ ।
ଦେଖିଲାତ ଚଳନ୍ତଳେ ଗୃହ ଅଛୁ ଶୋଇ ।
ତର ତର ହୋଇ ବୃକ୍ଷୁ ଅଇଲା ଓହ୍ଲାଇ । ୭୦ ।
ତୋଳଇ ଗୃହକୁ ବାଳୀ ମନର ଆକୁଳେ ।
ଓଷ୍ଠାଗ୍ରେ କୋପ କଟେବ ଉତ୍ତୁର ହୋଇଲେ । ୭୧ ।
ନ ଉଠଇ ଗୃହ ଇଚ୍ଛା ଉଚ୍ଛୁଡ଼ଇ କର[୨୯] ।
ମୂର୍ଚ୍ଛା ଯାଇ ପଡ଼ିଅଛୁ ନ ଦେଇ ଉତ୍ତର । ୭୨ ।
କସ ଯେ ହୋଇଲା ବୋଲ ଭାଳଇ ତରୁଣୀ ।
ବେଗ କର ଗୃହ ମୁଖେ ଛିଞ୍ଚିଲକ[୩୧] ପାଣି । ୭୩ ।
ଚେତନା ପାଇଣ ଗୃହ ଉଠିଣ ବସିଲା ।
କୁମାରୀ ମୁଖକୁ ଗୃହ ଅଲପ ହସିଲା । ୭୪ ।

---

୨୭ । ଅଚେତନ=ଅଚେତନ । 'ଶ୍ରମେ ଏକ ବନ ବନ ହୃଦେ ଅଚେତନ ବନଜାକ୍ଷୀ କ ଦୁଃଖ ଭାଜନ ଜନ' । (ପ୍ରେମସୁଧାନିଧି;

୨୮ । ଏ ଧାଡ଼ିଟିରେ ବାକ୍ୟ ଗଠନର ଦୋଷ ଥିବାରୁ ବିପରୀତାର୍ଥ ବୋଧ ହେବା ଅସମ୍ଭବ ନୁହେଁ । ତେଣୁ 'କିକରୁଛୁ ବୋଲ ଗୃହକୁ ସେ କଲା ପୁଚ୍ଛା' ହେଲେ ଅର୍ଥ ସୁସ୍ପଷ୍ଟ ହେବ । କିମ୍ବା 'ଗୃହ' ପଦଟି ପରେ 'ବୋଲ' ପଦଟିକୁ ବସାଇଲେ ଅର୍ଥ ସଙ୍ଗତ ହେବ ।

୨୯ । କର (ପୋଥିପାଠ) । ୩୦ । ମୂର୍ଚ୍ଛା=ମୂର୍ଚ୍ଛା ।

୩୧ । ଛିଞ୍ଚିଲକ (ପୋଥିପାଠ) ।

ଇଚ୍ଛାବତୀ ବୋଲେ ତୋହୋ କେବଣ ବେଭାର
ତୋହୋର ଅବସ୍ଥା ଦେଖି ତନୁ ମୋ କାତର । ୭୫ ।
କାହାକୁ ତୋ ବ୍ୟେଭୀତ କହ ମୋ ଆଗର ।
ନ କହୁ ବୋଲଣ ତୋତେ ସପତ[୭୨] ମୋହୋର ।୭୬।
ଇଚ୍ଛାର ବଚନେ କୃଷ୍ଣ ଦ୍ରବିତ ହୋଇଂ ।
ବୋଲେ ତୋ ରୂପ ଦେଖି ଗ୍ୟାନ ହାରିଲୁ ମୁହିଂ ।୭୭।
କି କରିବି କି ବୋଲିବି ନ ଜାଣିଇଂ କିଛି ।
କେବଳ ସ୍ମରିରେ ମୋ ନିଶ୍ୱାସ ବହୁଛି । ୭୮ ।
ଏମ୍ୱା ଶୁଣି ଇଚ୍ଛାବତୀ ସନ୍ତୋଷ ହୋଇଲା ।
ମୁଖରେ ଚୁମ୍ବନ ଦେଇ କୋଳେ ବସାଇଲା । ୭୯ ।
ଭୁଜରେ ଭିଡ଼ଣ କୋଳ କରନ୍ତେ ହରଷ
କୃଷ୍ଣ ଇଚ୍ଛାବତୀ ଦୁହେଂ କେହ୍ନିନାହିଂ ପାସ ।୮୦।
ନାନାମତେ ଗଢ଼ିବନ୍ଧେ କାମେଣ ମାତିଲେ ।
ମଦନ ଆକୁଳ ବେନି ଅଂଗୁ ଶାନ୍ତ୍ରି[୭୩] କଲେ । ୮୧ ।
ରତିରଂଗ ସାରି ଜଳେ ସ୍ନାହାନ ସାରିଲେ ।
ନୀବିବନ୍ଧ କେଶବାସ ଅଂଗ ସମ୍ଭାଳିଲେ । ୮୨ ।
ସୁରତି[୭୪] ସାରିଣ ପୁଣ କୁମର କୁମାରୀ ।
ଇଚ୍ଛା ମୁଖ ଚୃହିଂ କୃଷ୍ଣ ବଚନ ପଚ୍ଚରି । ୮୩ ।
ପିତାମାତା ଛାଡ଼ି ମୁହିଂ ହୋଇଲି ନିରେଖ ।
ତୋର ପରସାଦେ ମୁଂ ଲଭିଲି ମହାସୁଖ[୭୫] । ୮୪ ।

---

୭୨ । ସପତ = ଶପଥ ଅର୍ଥରେ ।
୭୩ । ଶାନ୍ତ୍ରୀ (ପୋଥିପାଠ) । ୭୪ । ସୁରତ ହେବା ସଙ୍ଗତ ।
୭୫ । ମାହାସୁଖ ( ପୋଥିପାଠ ) ।

ନୋହିଲେ କି ଦୁଃଖ କାଟେକି ମଧ୍ୟ ପରିପତି !
ବିଧାତା କହାଣି ମୋତେ ଆଣିଲା ତୁରିତ । ୮୫ ।
ନ ଦେଖି ଅଛଇ ମୁହିଁ ସଖା[୩୬] ବନ୍ଧୁ ନାହିଁ ।
ତୋତେ ମୁଁ ପାଇଲି ପୂର୍ବ ଶଙ୍କରଙ୍କୁ ଧ୍ୟାଇଁ ।୮୬।
ଗୃଷ୍ଟ ବୋଲେ ବାଳ୍ପତ କୁମାରୀ ଯେବେ ସତ[୩୭] (?)
ଯାବତ ଜୀବନ ମୋର ତୋର ରହିଃ ତନ୍ତ୍ର[୩୮] ।୮୭।
ସୁଫଳ ଜୀବନ ମୋର ତୋ ସଙ୍ଗେ ପୀରତ ।
ଆଜହୁଁ ବିଧାତା ମୋତେ ଦେଲା ସଦଗତ । ୮୮ ।
ଦୟା ଅନୁରାଗ ଗ୍ରିହ୍ୟ କରିଥିବୁ ମୋତେ ।
ଯେତେକ ମାଗୁଣି ମୁହିଁ ମାଗୁଅଛୁ ତୋତେ । ୮୯ ।
ଗୃଷ୍ଟର ବଚନେ ଇଚ୍ଛା ବୋଲଇଁ ଉତ୍ତର ।
ତୋତେ ମୋତେ ଦେଇଛନ୍ତି ଗଉରୀ ଶଂକର । ୯୦ ।
ଧନ ଯଉବନ ଗୃଷ୍ଟ ସର୍ବଦା ନ ଥାଇ ।
ପୀରତ କୀରତ ଯେବା ଯୁଗେ ଯୁଗେ ଥାଇ । ୯୧ ।
ମହା ସେ ପ୍ରତାପୀ ରାଜା ଭୋଜ ନୃପବର ।
ତୁମ୍ଭଙ୍କୁ ପାଇଁଣ ମୁଁ ଗ୍ଲାହିଲି ଉପ୍ୟେତାର । ୯୨ ।
ପିତା ମାତା ଭାଇବନ୍ଧୁ ଭୟେ ଭୀତ ନାହିଁ ।
ଛାଡିଲି ସକଳ ଲାଜ ତୁମ୍ଭର ସେ ପାଇଁ । ୯୩ ।

---

୩୬। ସଖା ( ପୋଥିପାଠ ) ।

୩୭ । 'ଗୃଷ୍ଟ ବୋଲେ କୁମାରୀ ମୋହର ଏହି ସତ' ହେଲେ ଅର୍ଥ ସଙ୍ଗତ ହେବ ଏବଂ କୁମାରୀଠାରେ କୁମାରର ପ୍ରତିଜ୍ଞା ବୋଲି ଉକ୍ତ ପାଦର ଅର୍ଥ ସୁସ୍ପଷ୍ଟ ହେବ ।

୩୮ । 'ତନ୍ତ୍ର' ସମ୍ବନ୍ଧ ଅର୍ଥରେ ବୋଧହୁଏ ବ୍ୟବହୃତ ।

ଆବନ୍ତ ଜୀବନ ମୋର ଶୁଶ୍ରୂରଣ[୭୯] ଥିବ,
ତୋହ ବିନୁ ସତ[୮୦]କ ମୋ ଅନ୍ତରେ ବଳିବ । ୯୪ ।
ତୁମ୍ଭେ ସେ ମୋହୋର କାନ୍ତ ମୁହିଂ ତୁମ୍ଭ ନାରୀ ।
ଜାଣ୍ଟେହିଂ ହେବଟା କୃଷ୍ଣ ମନେ ଥିବ ଧରି । ୯୫ ।
ଯେ ଯିସ[୮୧] ବୋଲିବ ବୋଲ୍ ମୁହିଂ ତୁମ୍ଭ ନାହା ।
ମନେ ଯାହା ଲୋଡ଼ୁଥିଲି ପାଇଲି ମୁଂ ତାହା । ୯୬ ।
ତୋତେ ମୋତେ ଧାତା ଆଣି କରାଇଛି ଭେଟ ।
ଆଜଠାରୁ ଅନୁଗ୍ରହ[୮୨] କରିଥିବୁ କୃଷ୍ଣ । ୯୭ ।
ଯେତେ ବୋଲି କରିଣ ସେ କୁସୁମ ତୋଳିଲେ ।
ଓଝାଏ କୋପ କରିବେ ଉତ୍ତର ହୋଇଲେ । ୯୮ ।
ଇଚ୍ଛାବନ୍ତ କୃଷ୍ଣ ଦୁହେଂ ଚଳିଗଲେ ଘରେ ।
ପ୍ରବେଶ ହୋଇଲେ ଯାଇଂ କୃଷ୍ଣଶାଳୀ ଘରେ । ୯୯ ।
କୁସୁମ ଥୋଇଂଣ ଉଭା କୁଅର କୁମାରୀ ।
କୃଷ୍ଣ ମୁଖ ଚାହିଁ ଓଝା ବଚନ ସତ୍ୱରି । ୧୦୦ ।
ପୁଷ୍ପ ତୋଳ ଯାଇ ତୁମ୍ଭେ କଲ ଯେ ଉତ୍ତର,
ଓଝାଂକ ସମ୍ମୁଖରେ ଇଚ୍ଛା ପୋଷ ବେନକର । ୧୦୧ ।
ତୋଟା ଯାକ କୁସୁମ ତୋଳିଲୁ ଆମ୍ଭେ ଖୋଜ,
ଓଝାଏ ଜାଣିଲେ ସେ କୁମାରୀ ମନ ହେଜ । ୧୦୨ ।
ଅନୁସର ସ୍ନିଗ୍ଧ ଛନ୍ତ କୁମାରୀ ବଦନ ।
ସଂପୂର୍ଣ୍ଣ[୮୩] ଚନ୍ଦ୍ରମା ମୁଖ ଦିଶୁଛି ମଳିନ । ୧୦୩ ।

---

୭୯ । ଶୁଶ୍ରୂରେଣ (ପୋଥିପାଠ) । ୮୦ । ସତ୍ତବଳିବା=ଇଚ୍ଛା ହେବା
୮୧ । ଯିସ – 'ଯାହା' ଅର୍ଥରେ ବ୍ୟବହୃତ ।
୮୨ । ଅନଗ୍ରହ (ପୋଥିପାଠ) ।
୮୩ । ସପୂର୍ଣ୍ଣ (ପୋଥିପାଠ)

ଜାଣିଲେ ଇଚ୍ଛାକୁ ଗୃଷ୍ଟ କଲ ବଞ୍ଚମୃଣା[୪୪] ।
ସେତେ କାଳ ଧାତା ଆଣି କଲ୍ କ ଦକ୍ଷଣା[୪୫] । ୧୦୫ ।
ଗୃଷ୍ଟର ବଦନ ଯେ ଦଣ୍ଡୁ ସେବ୍ନମନ୍ତ ।
ସେକାଳେ ଗୃଷ୍ଟକୁ ଗୁରୁ ଦଣ୍ଡାଇଲେ ଜନ୍ତ । ୧୦୫ ।
ଦେଶାନ୍ତୀ ହୋଇ ତୋର ଭୟେ ଝୁଦ ନାହିଁ ।
ସେତେକ ସ୍ୱସ୍ନେ କଥା କଲୁ କାହିଁପାଇଁ । ୧୦୬ ।
ମହାପ୍ରତାପୀ ସେ ଅଟେ ଭୋଜ ନୃପବର ।
ତାହାର କୁମାରୀ ସଙ୍ଗେ ତୋର ପରିଗ୍ରହ । ୧୦୭ ।
ସେତେକ ବୋଲଣ ସେ ଚଣ୍ଡୀ ପୂଜା କଲେ ।
ନଇବେଦ୍ୟ ସାରିଣ ସେ ନଜପୁରେ ଗଲେ । ୧୦୮ ।
ଇଚ୍ଛାବନ୍ତୀ ଥୋକାଯେ ଦୂର[୪୬] ଉଇଲେ ଗୋଡ଼ାଇ ।
ସୁବୋଧଣ ଗୁରୁ ତାଂକୁ ଦେଲେ ବାହୁଡ଼ାଇ[୪୭] । ୧୦୯ ।
ନଜ ମନ୍ଦିରରେ ଯାଇଂ ପ୍ରବେଶ ହୋଇଲେ ।
ଗୃଷ୍ଟକୁ ସଂଗରେ ଘେନ ଭୁଞ୍ଜିଣ ବସିଲେ । ୧୧୦ ।
ଆଞ୍ଚୋବନ[୪୮] ସାରି ସେ ପଦ୍ନୁଡ଼ିଲେ[୪୯] ନଶି ।
ସେମନ୍ତେଣ ଗ୍ରହ ପାହି ଦବସ ପ୍ରକାଶି । ୧୧୧ ।

---

୪୪ । ବଡ଼ମୃଣା = ବଞ୍ଚନା, କନ୍ତୁ ବଡମ୍ନନା ଶୁଦ୍ଧପାଠ । ୪୫ । ପୂର୍ବ ପାଦରେ ଥିବା 'ବଡ଼ମ୍ନଣା' ପରିବର୍ତ୍ତେ 'ବଡ଼ମ୍ନଣ' ଓ ପରପଦରେ ଥିବା 'ଦକ୍ଷଣା' ପରିବର୍ତ୍ତେ 'ଦକ୍ଷଣ' କଲେ ଅର୍ଥବୋଧରେ କୌଣସି ବ୍ୟାଘାତ ଘଟୁନାହିଁ ।

୪୬ । ଧୂର (ପୋଥିପାଠ) । ୪୭—ବାହୁଡାଇଂ (ପୋଥିପାଠ) ।

୪୮ । ଆଞ୍ଚୋବନ = ଆଚମନ ଦେର ଅପଭ୍ରଂଶ ।

୪୯ । ପହୁଡଲେ (ପୋଥିପାଠ) ।

ଅନୁସରି ଇଚ୍ଛାବତୀ ବସିଅଛି ଆସି ।
ଯେମନ୍ତ ସମୟେ ଗୁରୁ ମିଳିଗଲେ ଆସି । ୧୧୨ ।
ଯେକା ହୋଇଂ ଗୁରୁ ସଙ୍ଗ ହୋଇଲେ ପ୍ରବେଶ ।
ଗୃହକୁ ନ ଦେଖି ଇଚ୍ଛା ଉଡ଼ିଲା ସାହସ । ୧୧୩ ।
ଭ୍ରମେତ ଅଇଲ ଗୁରୁ ଗୃହେତ ନଇଲ ।
ଉଖାରେ ବୋଇଲେ ଗୃହ ଗୃହରେ ରହିଲ । ୧୧୪ ।
ଯେହା ଶୁଣି ଇଚ୍ଛାବତୀ ହଳଲ ଶରୀର[୫୦] ।
ଫେଡ଼ି କହିଲ ମନେ ରହିଲ ଅନ୍ତର[୫୧] (?) । ୧୧୫ ।
ଆମ୍ଭେ ନକହିଲୁଂ ଗୁରୁ ଜାଣିଲେ କେମନ୍ତେ ?
ଗୃହସ୍ୱଂ ନଣ୍ଡିଲ ଅବା ତହିଁର ଜମନ୍ତେ ! ୧୧ ।
ଯେମନ୍ତ ସମୟେ ମୃଦୁ ମୂଲି ପରବେଶ ।
ମୋହେଣୋହଂ ସାରିବ ମାତ୍ରେ ବଦନ ଖୋ ଆସ । ୧୧୭ ।
ଯେମନ୍ତ ଶୁଣିଣ ଇଚ୍ଛା ଅନ୍ତପୁର ଗଲା ।
ଦୀନ ବନମାଳୀ ଯେହା ଗୀତରେ ଗାଇଲ । ୧୧୮ ।



---

୫୦ । ସ୍ୱଶ୍ୱର (ପେ ଥିପ:ଠ) ।

୫୧ । ଏ ପାଦଟିର ଅର୍ଥ ଆଦୌ ସୁସ୍ପଷ୍ଟ ନୁହେଁ । ଏଠାରେ "ଫେଡ଼ି ନକହିଲ ମନେ ରହିଲ ଅନ୍ତର" ହେଲେ କୌଣସି ପ୍ରକାରେ ଅର୍ଥ ସଙ୍ଗତ ହୋଇପାରେ । ବୋଧହୁଏ "ଇଚ୍ଛାବତୀ କିଛି ନ କହି ମୌନ ହେଲ" ଏହି ଅର୍ଥରେ ଉକ୍ତ ପାଦଟି ପ୍ରୟୋଗ କରିଛନ୍ତି !

## ତୃତୀୟ ଛାନ୍ଦ

ଆଷାଢ଼ ଶୁକ୍ଳ ବାଣୀରେ ଗଢ଼ିବ ।

ସ୍ୱପ୍ନ ଅନନ୍ତରେ ଶୁଣ ସୁଜନ
ଇଚ୍ଛାବତୀ ଗଲା ନିଜ ଭବନ ।
ଗୃହକୁ ନ ଦେଖି ବିକଳ ମତି,
ତଡ଼ିକନ୍ତିକା ଗୃହାଂଇ[1] ନିରେଖି,
ସେ ତରୁଣୀବର, କମ୍ପଇ କାମେ ହୋଇଣ ଅଥିର । ୧ ।

ମନର ବେଦନା ନଜାଣେ କେହି,
ଦଇବ ବିନୁ ଆନଗତି ନାହିଂ
ତେଜିଲା ଭୋଜନ ଶୟନ ସେହି,
ବାମାଭରଣ ପହୁଡ଼ିଲା ଯାଇଂ,
ସେ ଗୃହ ବିଚ୍ଛେଦ
କେ ତାହା ଜାଣିମ ହୃଦ ବିଚ୍ଛେଦ । ୨ ।

ମୃଦୁସ୍ମିତା ସଖୀ ଆଗେ କହିଲେ,
ଇଚ୍ଛାବତୀ ତ ମଣୋହିଂ ନୋହିଲେ ।
ବେସନ[2] ନାହିଂ ତାପେ ଗୁରୁତର,
ଶୋଭିଲା ବାମା ରତ୍ନଲଂକର ।

---

୧ । ଗୃହାଂଗ ହେବା ଉଚିତ ।
୨ । ବେସନ, ବ୍ୟଞ୍ଜନ = ଅର୍ଥାତ୍ ବେଶ ଭୂଷଣ ଅର୍ଥରେ ବ୍ୟବହୃତ ।

ତା ଶୁଣି ଜନନୀ,
ବେଗେ ଅଇଲେ ମନେ ତାପ ଘେନ । ୩ ।

ପଲଂକେ ରାଣୀ ବସିଲେକ ଯାଇ,
ଆଶ୍ୱାସ କରି କହନ୍ତି ମଣାଈଂ[3],
ତୁଁ ମୋର କୁଳମଣ୍ଡଣୀ[4] ଗୋ ଜେମା,
କି ନିମନ୍ତେ ତାପ କରୁଛୁଁ ଝେମା,
ମୋ ଦୁଃଖୀରତନ,
ଦରିଦ୍ର ନିଧି ଅମୂଲ୍ୟ ରତନ । ୪ ।

ପିତା ତୋର ବନ୍ଧୁ ବାନ୍ଧବ[5],
ସବୁରି ଦୁଲଣା[6] ଅତି ସୁଲଭ ।
କାହିଁପାଇଁ କି ମନେ ଯେତେ ତାପ,
କନ୍ଦୁକନା ମୋର ଦୁଃଖର ବାପ,

---

୩ । ମଣାଈଂ = ବୁଝାଇ ।

୪ । ମଣ୍ଡଣୀ — ଶୁଦ୍ଧପାଠ ମଣ୍ଡନୀ ଅର୍ଥାତ୍ ଭୂଷଣ ସ୍ୱରୂପା ।

୫ । ଏ ପାଦର କେତୋଟି ଅକ୍ଷର କୀଟଦଂଷ୍ଟ ହୋଇ ଥିବାରୁ ଅର୍ଥ ଆଦୌ ସୁସ୍ପଷ୍ଟ ନୁହେଁ । କିନ୍ତୁ ପରପାଦ ସହିତ ସାମଞ୍ଜସ୍ୟ ରଖି ଅର୍ଥ କଲେ ଇଚ୍ଛାବତୀ ପିତା ମାତା ବନ୍ଧୁ ବାନ୍ଧବମାନଙ୍କର ସ୍ନେହଶୀଳା ଝିଅ ଥିଲେ ବୋଲି ପରିଷ୍କାର ଜଣାଯାଏ । ତେଣୁ "ପିତା ମାତା ସବୁ ବନ୍ଧୁବାନ୍ଧବ" ହେଲେ ସୁନ୍ଦର ହେବ ।

୬ । ଦୁଲଣା = ଗେହ୍ଲା ।

ମୋ ଜୀବର ବନ୍ଧୁ,
ନ ଛୁଟଇ[୬] ହୋଇଯିବ କରୁଣାସିନ୍ଧୁ । ୫ ।

ମାତାଙ୍କ ବୃତ୍ତ ଶୁଣି ଇଚ୍ଛାବତୀ
ହୃଦବେଦନା କେହ୍ବ ନ ଜାଣନ୍ତି,
ବଞ୍ଚାଇ[୮] କହନ୍ତି ଶୁଣ ଗୋ ମାଏ,
ଆଜ ମୋ ତନୁ ଅଳସିତ କାହ୍ଁ ।
ନିଦ୍ରା ନାହିଁ ଆନ,
ଅଙ୍ଗ ନଭୁଞ୍ଜିବ ଲେପ ଚନ୍ଦନ । ୬ ।

ଶୁଣିଣ ମାତା ଚଳିଗଲେ ଘରେ,
କର୍ପୂର ଚନ୍ଦନ ପନ୍ନୀର[୯] ନୀରେ,
ଚୂଆ ଚନ୍ଦନ ନାନା ଦ୍ରବ୍ୟ ମାନ,
ମୃଦୁସୁନ୍ଦରୀ ହାଥେ ଦେଲେ ବହନ,
ମୋ ଜେମାକୁ ଲେପ,
ଯେମନ୍ତେ ତୁଟଇ ହୃଦର ତାପ । ୭ ।

ପରିବାରମାନେ ବେଗେ ଅଇଲେ,
କପୂର ମାଡ଼ି ଚନ୍ଦନ ଲେପିଲେ,
ମଦନବାଣ ବନ୍ଧଇ ହୁତାଶ,
ଉଠଇ ବସଇ ଘୁଞ୍ଜେ ନିଶ୍ୱାସ,
ସେ ବୃତ୍ତ ନିଚ୍ଛେଦ,
କେ ତାହା ଜାଣିମ ହୃଦର ଭେଦ ? ୮ ।

---

୭ । ନୁଚ୍ଛୁବା - ମୂର୍ଚ୍ଛ ହେବା । ୮ । ବଞ୍ଚାଇ କହିବା = ମନୋଭାବ ଗୋପନକରି କହିବା । ୯ । ପନ୍ନୀର = ସୁବାସିତ ଜଳ ବିଶେଷ ।

ଅମ୍ବୁବଷ୍ଣ ନାମେ ଆମ୍ଭାର ସଖୀ,
ସେ ଯାଇଂ ପଦ୍ମରଇ ଚନ୍ଦ୍ରମୁଖୀ,
ବାଞ୍ଛତ ତରୁଣୀ କାମେ ଦୁଃଖିତ,
ମୋତେ କମ୍ପାଇଂ ନ କହୁ ସଘାଂତ
ମୁଂ ଭୋର ଷଣ୍ମାସ,
ନରକେ ସେବା କରୁଥାଇଂ ପାସ । ୯ ।

କେବଣ ବେଦନା ମୋତେ ନ କହୁ,
କମ୍ପାଇଂ ସ୍ନେହେ ଦୁଃଖେ ଧନ ନେଇ,
ତୋହ୍ମ ଯେନ ସବୁ ମୋର ସମ୍ପଦ,
ମୋତେ ଅନ୍ତର କରୁଥାଇ ସ୍ନେହ !
ଦୁଇକର ଧରି,
ଆଶ୍ବାସି ବସାଇଲା କୋଳକରି । ୧୦ ।

ସଖୀକି ଦେଖିଣ କୋପେ ଦୁଃଖିତ,
କି କରିବ ମୋତେ କହ ସଘାଂତ,
ତୋହ୍ମ ନଥିଲା ଯେବେ ମୋର ସଖୀ,
ମୋ ବେଦନା କି ନ ଜାଣୁ ସଖୀ !
ତୁମ୍ଭେ ଗୁଣମଣି,
ଜୀବନ ରଖ ମୋ ପ୍ରାଣମିତଣି ! ୧୧ ।

ସମସ୍ତ ଦାସୀମାନଙ୍କୁ ବଞ୍ଚାଇଂ
ଅମ୍ବୁବଷ୍ଣାକ କହନ୍ତ ମଣାଇଂ[୧୦],

---

୧୦ । ମଣାଇଂ — ବୁଝାଇ ।

ମୋର ଜୀବନ କର୍ମା ବଞ୍ଚିଅଛି,
ଧର୍ମ ଗ୍ରନ୍ଥକୁ ନ ପାରଇ ମୁଞ୍ଚି,
ସେ ପୁରୁଷବର,
ତାଠନ୍ତଂ[୧୧] ରହିଛି ଜୀବନ ମୋର । ୧୨ ।

ସୁବୁଦ୍ଧି[୧୨] ପୁରୁଷ ନାଗରବର,
ତାର ବଚନ୍ଦେ ମତିଭ୍ରମ ମୋର,
ଯେବେ ଜଇବ ସଖି ତାକୁ ଆଣ,
ନୋହିଲେ ସଖୀ ତେଜିବି ପରାଣ,
ସେ ମୋହର ଜୀବନ,
ତାକୁ ନ ଦେଖି ନ ସରଇ ଦିନ । ୧୩ ।

ତୁ ସଖୀ ଆତ୍ମାକାରେଣୀ[୧୩] ମୋହର[୧୪],
ତୋହର ଯେନ ସିନା ମୋର ବସୃର,
ପ୍ରେମକଠାବରେ ବନ୍ଧ୍ୟା ପଡ଼ିଥିଲୁଂ,
ଦୁହେଁଂ କାମଭ୍ରେଲେ ମତ୍ତ ହୋଇଲୁଂ,
ବଢ଼ିଲା ସୁରତି,
ସୁବେଶ ପୁରୁଷ ସଂଗେ ପୀରତି । ୧୪ ।

ମାଳତୀ ଭୁଲେ ଭ୍ରମର ଯେମନ୍ତ,
ମୋତେ କୁମର କଲାକ ତେମନ୍ତ,

---

୧୧ । ତାତ୍ତ୍ୱଂ = ତାହ ଠାରେ । ୧୨ । ଶୁବୁଦ୍ଧି (ପୋଥିପାଠ) ।
୧୩ । ଆତ୍ମାକାରେଣୀ = ଜୀବନର ସଦ୍‌ଗତି କାରେଣୀ ।
୧୪ । ମୋହର (ପୋଥିପାଠ) ।

କଲେ ଦଇବ ବିଚ୍ଛେଦ କଷଣ,
ନଷ୍ଟପ୍ରେଂ ସଖି ତେଜନ୍ତି ପରାଣ,
ଘୃଷ୍ଟ ମୋତେ ଦିଅ
ଗୃହ ଘରକୁ ବେଗେ ଚଳିଯାଅ । ୧୫ ।

ଚରଣ ଧରି ଲୋଟଇ ସୁନ୍ଦରୀ,
ଆଶ୍ୱାସ କରି ଅମ୍ବୁବକ୍ଷ ନାରୀ,
ସ୍ୱପ୍ନ ଗୁରୁ କଥାକୁ ନକର ଶୋକ
ମନ ଥିରକର ଯୁବା ବିବେକ
ଅଧିର ଗୋ ମୁଗ୍ଧଂ,
ଚତୁର କାର୍ଯ୍ୟ ସାଧନାଇଂ[୧୫] ଯାଅ । ୧୬ ।

ଏଣୀ ପ୍ରବୋଧି ସହଚରୀ ଗଲା,
ଗୁରୁଂକ ଘରେ ଦୂତକୁ ଦେଖିଲା,
ଚତୁରୀ ନାରୀ ଭଲ ଠାବ କଲା,
ସଖୀ ବିରହ ତାହାକୁ କହିଲା,
ସଖୀର ବେଦନା,
ତାଂକୁ କହିଲା ଅତି ଶୋଚନା । ୧୭ ।

ଜୀବନ ତେଜି ମଲୁଅଛି ଜାଳି,
ତୋତେ ନ ଦେଖି ଇନ୍ଦୁବତୀ ବାଳୀ[୧୬],
ନ ଲୁହେ ଚନ୍ଦ୍ର ଚନ୍ଦନ ସୁବେଶ,
ଅମୀୟୁ[୧୭] ପାନ ନ କରଇ ଗ୍ରାସ,

୧୫ । ସାଧନାର୍ଥଂ ଶୁଦ୍ଧପାଠ । ୧୬ । ଜାଳି (ପୋଥିପାଠ) ଉପର ପାଦରେ 'ଜାଳି' ଥିବାରୁ ତଳ ପାଦରେ ବାଳୀ ପଦ ଶ୍ରୁତି ମଧୁର ହେବା ସଂଗେ ସଂଗେ ଯୁକ୍ତିଯୁକ୍ତ ହେବ । ୧୭ । ଅମିଅ (ପୋଥିପାଠ) ।

ବେଗେ ଚାଲି ଯିବା,
ଭକ୍ଷାବର୍ଣ୍ଣିଙ୍କ ଜୀବଦାନ ଦେବା । ୧୮ ।

ଶୁଣିଣ ଚାଟ ବୋଲଇ ବଚନ,
ମୁଂ ଘର ଅଟଇ ଭକ୍ଷାସି[୧୮] ଜନ,
ନୃପତି କୁମାରୀ ପାଇବ କାହିଂ,
ରଜା ଜାଣିଲେ କଢେ ମୁଣ୍ଡ ନାହିଂ,
ନ କହ ଏମନ୍ତ,
ତୁମ୍ଭେ ରଜାଲୋକ ଆମ୍ଭର ମାତ । ୧୯ ।

ନରେଖ ମୁଂକେ ମାତା ପିତା ନାହିଂ,
ଗୁରୁଙ୍କ ଘରୁ ଅନ୍ନ ମାଗି ଖାଇଂ,
ଧର୍ମ ପିତା ମୋର ଗୁରୁ ଗୋସାଇଂ,
ତାହାଙ୍କ ବିନୁ ଆନ ଆଶ୍ରେ ନାହିଂ,
ତୁମ୍ଭେ ବେଗେ ଚଳ
ଗୁରୁ ଜାଣିଲେ ମୋ ପୂରବ କାଳ । ୨୦ ।

ଅମ୍ବୁବତୀ ବୋଲେ ଶୁଣ କୁମର,
ବନମାଳା ସଖୀ ଦେଇଛୁ[୧୯] ମୋର,
ସଂସାରେ ଯେତେକ ପ୍ରୀତି ରହିଥାଇ,
ଯେତେ ଅପ୍ରୀତି କର କାହିଂ ପାଇଂ,
ସତ୍ୟ କରଅଛୁ,
ମୋ ସଖୀ ତୋତେ ନ ପାରଇ ମୁଞ୍ଚି । ୨୧ ।

---

୧୮ । ଭିଖ୍ୟାରୀ (ପୋଥିପାଠ) ଭକ୍ଷାସି = ଭିକ୍ଷା ବୃତ୍ତି ଅବଲମ୍ବନ କରି ଚଳୁଥିବା ବ୍ୟକ୍ତି ।
୧୯ । ଦେଉଛୁ (ପୋଥିପାଠ), କିନ୍ତୁ 'ଦେଇଛୁ' ହେବା ସମୀଚୀନ ।

ଯେତେ ବୋଲି ମାଲ ଗଲେ ଲମ୍ବାଇ,
ଅନେକ ଗୂଢ଼ ବଚନ ବୁଝାଇ,
ଶୁଣି କୁମର ସନମତ କଲା,
ସନ୍ଧ୍ୟା ସମୟରେ ବାହାର ହେଲା,
ଯେକାଳୀ କୁମର[10],
ସ୍ୱର୍ଗ ରୂପରେ ପଶିଲକ ଗ୍ରେର[11] । ୧୨ ।

ଭୂମିରେ ଶୟନ ତେଜି ପଲଂକ,
ଧୂଳିରେ ଯେସନେ ପଡ଼ିଥାଇ ରଂକ,
ଦେଖି କୁମର ଚକିତ ହୋଇଲା,
ଧୂଳି ଝାଡ଼ି ତନୁ କୋଳେ ଧଇଲା,
ବିବିଧ ସୁବେଶ,
ମାଜଣା ମୋଣୋହ୍ନାଂ ଅମୀୟ ରସ । ୧୩ ।

ଲଟେ ସୁନ୍ଦରୀ ନ ଟେକଇ ଶିର,
ପଲଂକେ ବଟେ କୁମାରୀ କୁମାର,
ଇଚ୍ଛାବତୀ ଆଗେ କହଇ ଗୂଢ,
ଗୁଜୁ କରଥାନ୍ତି ଅତି ଆକଟ,
ଆସି ନ ପାରଇ,
ମୋ ସ୍ୱାର ଦୋଷ ନଧର ଗୋ ସଖୀ ! ।୧୪।

ଶୁଣି ଇଚ୍ଛାବତୀ ତୋଷ ହୋଇଲା,
ଭୁଜକ ଭିଡ଼ି ମୁଖେ ଚୁମ୍ବନ ଦେଲା,

---

୧୦ । ଯେବକ କାଠ ମେର ( ପୋଷପାଠ ) ।
୧୧ । 'ପଶିଲ କ ଗ୍ରେବ' ଅପେକ୍ଷା 'ପଶିଲ ନଗର' ସୁନ୍ଦର ହେବ

ସ୍ୱପ୍ନ[୧୨] ଦେଖି ବିବିଧ ସୁରତି,
ଚଉଷଠୀ ବନ୍ଧେ କଲେକ ରତି,
କନ୍ୟା ଅନ୍ତପୁରେ[୧୩],
ସେମନ୍ତେ ଗୃହେ ରହିଲ ଗୋପନେରେ । ୨୫ ।

କେହି ନଜାଣନ୍ତି ଜାଣନ୍ତି ସଖୀ,
ଅମୃତବତୀ ପାଖେ ଥାଇ ନିରେଖି,
ସେବକ[୧୪] କାଠ ମେଢେ ସ୍ତିରୀଙ୍କ ବାସ,
ତହିଁଙ୍କ ଗମିଲ କେଉଁ ପୁରୁଷ,
କେହି ନଜାଣନ୍ତି,
ଗୃହେ ରହିଲ ଇଚ୍ଛାବତୀ ତହିଁ । ୨୬ ।

ଓଝା ସେ ଗୃହଆଡ଼େ ଖୋଜୁଥାନ୍ତି,
ଗୃହେ କେଣେ ଗଲ ଅନ୍ତ ନ ପାନ୍ତି,
ବୋଇଲେ ଆମ୍ଭଙ୍କୁ ନକହି ଗଲ,
ଧର୍ମ ହୋଇଣ ସେ ଅନ୍ତର କଲ,
ଅନ୍ନ ବସ୍ତ୍ର ଦେଲ,
ଧର୍ମ ନନ୍ଦନ[୧୫] ପ୍ରତି-ପାଳିଥିଲ । ୨୭ ।

ସେ ଯାହା ଅର୍ଜିବ ଭୁଞ୍ଜିବ ତାହା,
ଦଇବ ଆଣି ଭେଟାଇଛି ଯାହା,

---

୧୨ । ସେ ସ୍ୱପ୍ନ (ପୋଥିପାଠ) ୧୩ । ଅନ୍ତେଶ୍ୱରପୁରେ (ପୋଥିପାଠ) କିନ୍ତୁ ଉକ୍ତ ପାଠ ଦ୍ୱାରା ଅର୍ଥ ସଙ୍ଗତ ହେଉନାହିଁ ।
୧୪ । ସେବକ କାଠମେଢ଼ — ବିଶେଷ ପ୍ରହରୀ ନିଯୁକ୍ତଥିବା କନ୍ୟାନ୍ତଃପୁର ।
୧୫ । ଧର୍ମର ନନ୍ଦନ (ପୋଥିପାଠ) ।

ଆମ୍ଭ ସମ୍ଭାଳିବା[୨୬] କିସ ହୋଇଲା,
କାଳେ ଆମ୍ଭଂକୁ ଅପଗ୍ଲୁତ[୨୭] ଦେଲା,
ଧାତା ତାଂକୁ ରଖ,
ଯେତେ ବୋଲି ଗୁରୁ ମନେ ବିମୁଖ । ୨୮ ।

ସ୍ୱଭାବେ ଆଗମ ଶାସ୍ତ୍ର ଜାଣନ୍ତି,
ବିଦ୍ୟାରେ ପରିପୂର୍ଣ୍ଣ ସେ ଅଛନ୍ତି,
ତେଣୁକରି ସର୍ବ ଜାଣନ୍ତି ତାହୁଂ,
ବେଳକୁ ସେ କଥା ଜାଣନ୍ତି ସେହୁ[୨୮],
ଯେମନ୍ତ କୁମର,
ଲଭି ଅହୁଳ କୁମାରୀ ସଂଗର । ୨୯ ।
ଯେକର ଆଗେ ଆରେକ କହନ୍ତି,
ରଭତେରୁବ ସଂଗେ ଇଚ୍ଛା ପୀରତି,
ଯେସନ ଧ୍ୱନି[୨୯] ଶୁଭିଲା କେତେକ,
ବୋଲବୋଲି[୩୦] ହୁଅନ୍ତି ସର୍ବ ଲୋକ,
ହୁରି ଯେ ଶୁଣିଲା,
ଭୁରିତେ[୩୧] ରାଜା ଗ୍ଲମୁଖେ କହିଲା । ୩୦ ।

---

୨୬ । ସମ୍ଭାଳିଲ (ପୋଥିପାଠ)
କିନ୍ତୁ 'ସମ୍ଭାଳିବା' ଦ୍ୱାରା ଅର୍ଥ ସ୍ପଷ୍ଟ ହୁଏ ।
୨୭ । ଅପଗ୍ଲୁତ — ଅପଖ୍ୟାତ ଅର୍ଥରେ
୨୮ । ଏ ପାଦଟିର ଅର୍ଥ ସ୍ପଷ୍ଟ ନୁହେଁ ।
୨୯ । ଧ୍ୱନ (ପୋଥିପାଠ) ।
୩୦ । ବୋଲବୋଲି ହେବା — ବୁଝାବୁଝ ହେବା ।
୩୧ । ଭୁରରେ (ପୋଥିପାଠ) ।

ଏମନ୍ତ ତହୁଁ କେତେ ଦିନ ଗଲା,
ଇଚ୍ଛାଗୃହ ମୃଦୁସ୍ଥଳୀ ଦେଖିଲା,
କୁମାରୀ ଉପରେ ସେ ନ କଲା ଗୋଳ,
ଏକ ଆରେକ ସେ ମୂଖ ଚହଲ,
ସେ କାହୁଁ ରହିବ ?
ଅବଶ୍ୟ ସେହି ପ୍ରଘଟ[୩୨] ହୋଇବ । ୩୧ ।

ଶୁଣି ନୃପତି ଦୋସାଧୁ ହକାରେ[୩୩],
ଚୋର ସଂଗେ ଇଚ୍ଛାବତୀ କୁମାରୀ,
ଧରି ଆଣି ମୋର ଛାମୁରେ ଦେବୁ,
ନୋହିଲେ ତୋ ବଂଶ ନଷ୍ଟେ ନାଶିବୁ
ତା ଦୋସାଧୁ ଶୁଣି,
ନଗ୍ର ପାଟଣା ଫେରି[୩୪] ଖୋଜେ ପୁଣି । ୩୨ ।

ରାଜା ନବର ଏକ କାଠି ଘର,
କାନ୍ଦ ବକନ୍ଦ ଆଡ଼ ଓହାଡ଼ରେ[୩୫],
ସ୍ଥିରି ମଧ୍ୟେ ପଶି ଠାବ ସେ କଲା,
ଅନେକ ଧନ ବସନ ବହିଲ[୩୬],
ଚୋର ଠାବକଲା,
ସ୍ୱରୂପ ବନମାଳୀ ଯେ କହିଲା । ୩୩ ।



୩୨ । ପ୍ରଘଟ-ପ୍ରକାଶ । ୩୩ । ହକାରି—ଡାକି । ୩୪ । ଫେରି—ବୁଲି ।
୩୫ । ଓହାଡ଼, ଶୁଦ୍ଧପାଠ । ୩୬ । 'ବହିଲ' ପରିବର୍ତ୍ତେ 'ଯେ ଦେଲ' ହେଲେ, ଦୋସାଧୁ ଅନେକ ଧନ ବସ୍ତ୍ର ବନମଧ୍ୟରେ ଚୋର ଖୋଜ ବାହାର କରିବାରେ ସମର୍ଥ ହୋଇଥିଲା ବୋଲି ଅର୍ଥ ସୁସ୍ପଷ୍ଟ ହେବ ।

# ୪ଥ ଛାନ୍ଦ

## ରାଗ—କେଦାର

( କେଦାର ଚକ୍ରକେଳୀ ବାଣୀରେ ଗାଇବ )

ଏଥୁ ଅନନ୍ତରେ ଶୁଣ ସୁଜନ
　　　　ଶୁଣ ଇଚ୍ଛାବତୀ ରସ ବିଧାନ । ୧ ।
ରାଜା ଶୁଣିଣ ମହା କୋପ କଲା,
　　　　ନଗ୍ର ଦୋସାଧୁଁ ଗୃହ୍ନଂ ଆଂଗ୍ୟା ଦେଲା ।୨।
ତୁମ୍ଭେ ରତ୍ତ ଚୋରକୁ ଧରିନେବୁ,
　　　　ନେଇ ନଗ୍ରପ୍ରାନ୍ତେ' ଶିର ଛେଦବୁ । ୩ ।
ଯେତେ ଗରବ ତାହାର ହୋଇଲା,
　　　　ଯେକ କାଠି ମେଢ଼କୁ ସେ ଗମିଲା । ୪ ।
ଭଲ ଦୋସାଧୁ ପଣେ ରାଜ୍ୟେ ଥାଉ,
　　　　କ୍ଷୁଦ୍ର କଥାମାନ ମୋତେ ନ କହୁ । ୫ ।
ଶୁଣି ଦୋହାଧୁ ପାଦ୍ୟେ ପଡ଼ି ଶୋଇଂ,
　　　　ଆଂଗ୍ୟା ପ୍ରମାଣେ ଚୋର ଧରିବଇଂ । ୬ ।
ଯେତେ ବୋଲି ଭଲଇ ନିରନ୍ତର,
　　　　ଚୋର ଖୋଜିବ କେବଣ ପ୍ରକାର । ୭ ।
ଯେ ନଗ୍ର କଟକରେ ଚୋର ନାହିଂ,
　　　　ସ୍ତ୍ରିଗ୍ରୀ ନବରେ ଚୋର ଥିବ ରହିଂ । ୮ ।

---

୧ । ଦୋହାଧୁ = କଟୁଆଲ ବା ନଗର ରକ୍ଷକ ।
୨ । ନ···ପାନ୍ତେ (ପୋଥିପାଠ)

ସୁନ୍ଦରୀ ମଧ୍ୟେ ଗମି ଭେଟ କରିବ,
ବହୁତ ଧନବସ୍ତ୍ର ମୁହିଂ ଦେବଂ । ୯ ।
ଯେମନ୍ତେ ବୋଲି ସିଂହଦ୍ୱାର ଭିତରେ,
ନିତ ଗମଣଂ ଗୁପତ ପ୍ରକାରେ । ୧୦ ।
ଇଚ୍ଛାବନ୍ତୀ ନିଯୋଗ ପରିବାରୀ[୪],
ସୁବାସ୍ତିନୀ ନାମା ସେ ଜେ ସୁନ୍ଦରୀ । ୧୧ ।
କେହୁ ଜଳ ପୂରାଇଁ ଦେନିଗଲେ,
କେହୁ ନିଯୋଗ କ୍ରମରେ ଖଟିଲେ । ୧୨ ।
ନାନା ନିଯୋଗ ପରିବାରୀ ଯେତେ,
ରଜକାରୀ[୫] ମାହାର[୬] ଆଦ ଯେତେ । ୧୩ ।
ଯେହୁ ଇଚ୍ଛାବନ୍ତୀର ସେ ଆସିବ,
କେବା ଜାଣିମ ଯେ ଚର ତାହାଂକ । ୧୪ ।
ଧନ ବସନ ଦେଲକ ବହୁତ,
ରାଜା ମାରିବ ବୋଲି ଥାଇ ଦୂତ । ୧୫ ।
ତାଂକୁ କେହି ନ କହନ୍ତି ବଚନ,
କାହିଂ ଜାଣିମେ ଭେଦ କଥା ମାନ । ୧୬ ।
ଯେଙ୍କ ମୃଦୁସୁନ୍ଦ୍ରୀ ନାମେ ମଦନା,
ପରଦୁଃଖେ ଜାଣେ ସେହୁ ବେଦନା । ୧୭ ।

---

୩ । ଧନବସ୍ତ୍ର ମୁହିଁ ଦେବ (ପୋଥିପାଠ)
୪ । 'ପରିବାରୀ' ଶବ୍ଦ ସେବିକା ଅର୍ଥରେ ପ୍ରୟୋଗ ହୋଇଛି । ଯଥା ପୋଇଲି ପରିବାରୀ ।
୫ । ରଜକାରୀ=ଧୋବଣୀ ।
୬ । ମାହାର ପଦ ମେହେନ୍ତରାଣୀ ଅର୍ଥରେ ବ୍ୟବହୃତ ହୋଇଛି ।

ଦେନେ ପଚାରିଲେ ସେ ଦୋସାଧକୁ,
ତୁମ୍ଭେ କେନମନ୍ତେ ଆସ ଯେଟକୁ । ୧୮ ।
ସ୍ତ୍ରିଶି ଭିତରେ ପୁରୁଷେକ ଦେଖି,
କମା ନବରକୁ ଆସ ନରେଖି । ୧୯ ।
କାନ୍ଦ ଦୋସାଧୁ ବୋଲେ ଶୁଣ ମାଯେ,
ରଜା ବକ୍ଷାବଳି[7] ଦେବ ନିଷ୍ଟଯେ । ୨୦ ।
ଯେକ କାଟି ମେଢ଼ରେ ରଖ ନେଉର;
ଭଉଣୀବଣୀ ସଂଗେ ତାର ବଉର । ୨୧ ।
ଯେନ୍ତୁ କଣ୍ଠେକେ ଗୋଲ ଦାକୁଅଛୁ,
ରଜା ହ୍ବକରାଇଂ ମୋତେ ତର୍ଜିଛୁ[8] । ୨୨ ।
ନେଉର ଧରି ଦେବୁ ଆମ୍ଭ ଘୁମୁର,
ନାହିଁ[9] ବଂଶ ମାରିବ ତୋ ନକର । ୨୩ ।
ମାଯେ ତୁମ୍ଭେ ମୋ ବଂଶ ରଖା କର,
ଧନ ବସନ ନିଅସି ଅପାର । ୨୪ ।
ନେଉର କେମନ୍ତେ[10] ଭେଟାଇବ ମୋତେ,
ତୁ ମୋ ଧର୍ମମାଆ ଅଟୁ ଯୁଗତେ[11] । ୨୫ ।
ପାଦ ଧରିଣ ଦୋସାଧୁ ଚୋଇଲା,
ଶୁଣି ମଦନା ମନେ ଦୟାକଲା । ୨୬ ।

---

୭ । ବକ୍ଷାବଳିଦେବା—ବକ୍ଷଦେଇ ମାରିବା ।

୮ । ତଜୁଛୁ (ପୋଥିପାଠ) ତର୍ଜିଛୁ—ତର୍ଜନା ଦେଉଛୁ ।

୯ । 'ନଇଲେ ନଷ୍ଟସ୍ତ ତୋ ବଂଶ ମାରିବ' ଏ ପାଦର ଅର୍ଥ ।

୧୦ । କେମନ୍ତେ—କୌଣସି ପ୍ରକାରରେ ।

୧୧ । ଯୁଗତେ—ପ୍ରକୃତରେ ।

ବୋଲେ ସନ୍ଧ୍ୟାରେ ସ୍ତ୍ରି ଷ୍ଟ ବେଶ ଧର,
ଯାଇ ପଶିବୁ ସେହି କାଠି ପୁଷ୍ପ । ୨୭ ।
ଚୋର ଇଚ୍ଛାବତୀ ସେହି ପଲଂକେ,
ନାନା କ୍ରୀଡ଼ା କରୁଥିବେ[12] ନିଶଙ୍କେ । ୨୮ ।
ତାକୁ ସମସ୍ତ ମଣାଇଂ[13] କହିଲ,
ଯେହ୍ନେ ନଜାଣନ୍ତି ସେହ୍ନ ବୋଇଲ । ୨୯ ।
ଶୁଣି ଦୋସାଧୁ ମନରେ ହରଷ,
ସେହ୍ନ କଥାତ ଅଟଇ ଯୁଗତ[14] । ୩୦ ।
ଦୁଃଖ ସୁନେଣ ଦବସ ରହିଲ,
ସ୍ତ୍ରି ଷ୍ଟ ରୂପେଣ ଦୋସାଧୁ ପଶିଲ । ୩୧ ।
ଆସି ମିଳିଲ ସେହି କାଠି ପୁଷ୍ପ,
ଯହିଂ ଅଛନ୍ତି କୁଅର କୁମାରୀ । ୩୨ ।
ଯାହା ମଦନା ତାକୁ କହିଥିଲ,
ସେହି ରୂପରେ ଚୋରକୁ ଦେଖିଲ । ୩୩ ।
ରଜ୍ଜୁ[15] ଘେନିଣ କଣ୍ଠେରେ ବାନ୍ଧିଲ,
ନିଜ ଘରକୁ ବୋଲି ଘେନିଗଲ । ୩୪ ।
ଇଚ୍ଛାବତୀ ମରଡ଼ାଣାଲେ[16] ଥିଲେ,

---

୧୨ । 'କରୁଥିବ' (ପୋଥିପାଠ), କିନ୍ତୁ ଇଚ୍ଛାବତୀ ଓ ଚୋର ଦୁହେଁ କ୍ରୀଡ଼ା କରୁଥିବେ ହେବା ସଙ୍ଗତ ।

୧୩ । ମଣାଇଂ – ବୁଝାଇ ।

୧୪ । ଯୁଗତ (ପୋଥିପାଠ), 'ଯୁଗତ' (ଯୁକ୍ତିଯୁକ୍ତ) ଶବ୍ଦ ଦ୍ୱାରା ଅର୍ଥ ପ୍ରକାଶରେ କୌଣସି ବାଧା ଉପସ୍ଥିତ ହେଉ ନଥିଲେହେଁ ଉଭୟ ପାଦର ଶେଷ ଅକ୍ଷର ସମାନ ହେଉନାହିଁ ।

୧୫ । ରେଯୁ (ପୋଥିପାଠ) । ୧୬ । ଅର୍ଥ ଅସ୍ପଷ୍ଟ ।

ଶୁଣି ସେହ୍ନ ଭୂମିରେ ମୋହଗଲେ । ୩୫ ।
ସବୁଠାରେ ଡାକିଲ (ସେ)[୧୭] ଚେଲ୍ଲ,
ରତ୍ତଚୈରକୁ[୧୮] ଧଇଲ କଣ୍ଠୁଆଲ । ୩୬ ।
ଇଚ୍ଛାବନ୍ତର ପ୍ରାଣ ଗୁଡ଼ଗଲା,
ଚୈର ଦୋସାଧୁ ଘରେ ବନ୍ଦହେଲ । ୩୭ ।
ସେଥି ଜତ୍ନରୁ ରଜନୀ ପାହିଲ,
ଦୋସାଧୁହିଂ ନିତ୍ୟକର୍ମ ସାରିଲା । ୩୮ ।
ରାଜା ଆସ୍ଥାନେ କରି[୧୯] ବସିଛନ୍ତି,
ଯାଇଣ ଦୂତ ଗ୍ରାମୂରେ ଜଣାନ୍ତି । ୩୯ ।
ଦେବ ଶୁଣିମା ହେଉ ସାବଧାନ[୨୦],
ଦୋସାଧୁ ଆସୁଅଛୁ[୨୧] ଚୈର ପୁଣ । ୪୦ ।
ରାଜା ବୋଲେ ବେଗେ ଆସ[୨୨] ଗ୍ରାମୂକୁ,
ନଗ୍ରଲୋକେ ବେଢ଼ିଛନ୍ତି ତାହାକୁ । ୪୧ ।
ସେହୁଦା କହନ୍ତି ନୃପତି ଗ୍ରାମୁର,
ନଗ୍ର ଦୋସାଧୁ ଆଣୁଅଛୁ ଚୈର । ୪୨ ।

---

୧୭ । 'ସେ' ଅକ୍ଷରଟି ପୋଥିରେ ନାହିଁ ।
୧୮ । 'ରତ୍ନଶ୍ରେରେ' ହୋଇଥିଲେ ଛନ୍ଦଭଙ୍ଗ ହୁଅନ୍ତା ନାହିଁ ।
୧୯ । 'ରାଜା ଆସ୍ଥାନେ ଭଜେ କରିଛନ୍ତି' ହେଲେ ସୁନ୍ଦର ହେବ ।
୨୦ । ସାବଧାନେ (ପୋଥିପାଠ)
୨୧ । ଆସୁଅଛୁ ସ୍ଥାନରେ 'ଆଣୁଅଛୁ' ହେଲେ ଅର୍ଥ ସୁସ୍ପଷ୍ଟ ହେବ ।
୨୨ । 'ଆସ' ପରିବର୍ତ୍ତେ 'ଆଣ' ହେବା ଅଧିକ ଯୁକ୍ତିଯୁକ୍ତ ।

ନଗ୍ର ଲୋକେ ଧନ୍ୟ ଧନ୍ୟ କରନ୍ତି,
କୁମର ମୂର୍ତ୍ତି[୨୪] ଦେଖି ମୋହ ଯାନ୍ତି । ୪୩ ।
ଧନ୍ୟ ପୁରୁଷ ଧନ୍ୟ ପିତା ମାତା,
ପୃଥୀ ଭିତରେ ଗଢ଼ିଛି ବିଧାତା । ୪୪ ।
ଇଚ୍ଛାବତୀ କି ଯେହ୍ନା ମୁରୁଛୁବ[୨୫].
ଯେହ୍ନା ମଲେ ଇଚ୍ଛା ନଷ୍ଟେ ମରିବ । ୪୫ ।
ଘୋଡ଼ାର ଅଣ୍ଟାରେ ଦଉଡ଼ି ବାନ୍ଧିଛି,
ବେକେ ଗଳଥା[୨୬] ମାର ଆଣୁଅଛି । ୪୬ ।
କସେ ରୂପକୁ କାମ ପଟାନ୍ତର,
ଯେହ୍ନେ ସୁନ୍ଦର ନାହିଁ ପଟାନ୍ତର । ୪୭ ।
ରାଜା ଛାମୁରେ ନେଇ ଭେଟାଇଲେ,
ଦେଖି ଭୋଜ ନୃପତି ମୋହଗଲେ । ୪୮ ।
ବୃନ୍ଦେ ବୋଇଲେ ଇଚ୍ଛାକୁ ଭର୍ଜନ[୨୭]
ଯେତ ଅଟଇ ନୃପତି ନନ୍ଦନ । ୪୯ ।
ଜେମା ସାଦ୍ରିଶେ[୨୮] ଯେ ବର ଅଟଇ,
ଯେହ୍ନ[୨୯] ଆମ୍ଭ ମନକୁତ ଖଟଇ । ୫୦ ।
ଯେହ୍ନା ମଲେ ଜେମା ନଷ୍ଟେ ମରିବ,
ଦେଖି ଜାଣିମା କେମନ୍ତ ପଡ଼ିବ[୩୦] । ୫୧ ।

---

୨୪ । ମୂର୍ତ୍ତି । ୨୫ । ମୁରୁଛୁବ = ତେଜ । ୨୬ । ଗଳଥା = ତଣ୍ଟି ବା ବେକରେ ଧକ୍କା । ୨୭ । ଭର୍ଜନ = ଭଜନ (ଯୋଗ୍ୟ) ଶବ୍ଦର ଅପଭ୍ରଂଶ ।
୨୮ । ସାଦ୍ରିଶେ = ସଦୃଶ ପଦର ଅପଭ୍ରଂଶ । ୨୯ । ଯେହ୍ନା ହେବା ବ୍ୟେଧସ୍ତୁ ।
୩୦ । 'ପଡ଼ିବ' ବଦଳରେ 'ହୋଇବ' ପ୍ରୟୋଗ ଦ୍ୱାରା ଅର୍ଥ ସ୍ପଷ୍ଟ ହେବ । ଅର୍ଥାତ୍ ଏହାପ୍ରତି ଜେମାର ମନୋଭାବ କଣ ତାହା ପରୀକ୍ଷା କରିବା ଲାଗି ରାଜା ସ୍ଥିର କଲେ ।

ଯେବେହା ବତ୍ସର ରାଜା ଅବଧାରି[୩୧],
ଆମ୍ଭ ଜୁଆଇଂ ଅଟ୍ଟ ଦେଶାନ୍ତରୀ[୩୨] । ୫୨ ।

ରାଜା ପ୍ରସନ ଗୃହର ବଚନ,
ରାଜା ଭାଷାକୁ ହୋଇ ଅବଧାନ । ୫୩ ।

ଯେବେ ଭାନୁ ଉଇଁମ ପଶ୍ଚିମରେ,
ବେଳଣ ମେରୁଗିରି ଶିଖରେ । ୫୪ ।

ଇନ୍ଦ୍ର ଦେବତା ଅଗ୍ନି ବରଷିବ,
ଗିରିଶିଖରେ କୁମୁଦ ଫୁଟିବ । ୫୫ ।

ବାରିନଧି ଯେବେ କୂଳ ଲଙ୍ଘିବ,
ତେବେ ମହନ୍ତ[୩୩] ବାକ୍ୟ ନ ଟଳିବ । ୫୬ ।

ମହାପୁରୁଷ ଯେତ୍ତ ବୋଲନ୍ତି,
ଯିବ ଗଲେହେଁ ବଚନ ପାଳନ୍ତି । ୫୭ ।

ତୁମ୍ଭେ ବଂଶିକ[୩୪] ହେଜ ନୃପବର,
ଯାହା ବୋଲୁଛ କରିବ ନକର । ୫୮ ।

ଯେବେହା ଶୁଣି ଭୋଜ ରାଜା ତକତ,
ଯେତୁ ପଣ୍ଡିତ ଅଟେ ବିଦ୍ୟାବନ୍ତ । ୫୯ ।

ଯେବେତେ ବିତପନ[୩୫] କାହିଁ ନ ଦେଖି,
ଭାଗ୍ୟ କରିଥିଲ ମୋ ଚନ୍ଦ୍ରମୁଖୀ । ୬୦ ।

---

୩୧ । ଅବଧାରି=ନିଶ୍ଚିତ କରି । ୩୨ । 'ହେ ବିଦେଶୀ, ତୁ ମୋର ଜୁଆଇଂ ହେଉ' ଏହା ମନରେ ସ୍ଥିର କଲେ । ୩୩ । ମହନ୍ତ (ପୋଥିପାଠ)

୩୪ । ବଂଶିକ=ସଦ୍‌ବଂଶଜ । ୩୫ । ବିତପନ=ଦୁଃସ୍ୱପ୍ନ ।

ଯେହ୍ନା ମାରନ୍ତ ବନ୍ଧନ୍ତ ନୁହଇ,
କଥା ବୁଝିବା ଧର ତାକୁ ନେଇ । ୬୧ ।
ଯେଥୁ କସ ହେବ ପରମାଣିମା[୩୬],
ଭଲ ସଂକେତ ଧରୁହ୍ନୁଂ ଜାଣିମା । ୬୨ ।
ଯେଥୁଅନ୍ତେ ଦୋସାଧି ହକାରନ୍ତି,
ତ୍ରିନିକଲ ତାଂ କାନରେ କହନ୍ତି । ୬୩ ।
ଯେହ୍ନୁ ମାରିବା ପଦାର୍ଥ ନୁହଇ,
ଯେହ୍ନା ମଲେ କେ କେମାକୁ ଜିଆଇ । ୬୪ ।
ତାକୁ ଖଡ଼ଗ[୩୭] ପ୍ରହାରିବୁ ନାହିଁ,
ଜୀଆଇ ଭୟ ଦେଖାଇବୁ ନେଇ[୩୮] । ୬୫ ।
ରାଜା ଦୋସଧି ଯେମନ୍ତ ବଚର,
କେହ୍ନ ନ ଜାଣନ୍ତି ଜନ ବାହାର[୩୯] । ୬୬ ।
ରାଜା ବାହ୍ୟରେ[୪୦] ବୋଇଲେ ବଚନ,
ନେଇଂ ବଷାବଳ ଦଅ ବହନ । ୬୭ ।
ରାଜା ଆଗ୍ୟାଂରେ ଦୋସାଧି ଚଳିଲ,
ନଗ୍ରବାହାରେ ଶମଶାନେ ନେଲ[୪୧] । ୬୮ ।
ରୋଷେ ଖଡ଼ଗ ଧଇଲ ହସ୍ତର,
ନେଇଂ ବସାଇଲ ଗୁଠ କନ୍ଧର । ୬୯ ।
ଇଷ୍ଟ ସୁମରଣା କର ତୋହର,
ରାଜା ନବଟର ପଶୁ ଛୋହ ଗୁର । ୭୦ ।

---

୩୬ । ପଚ୍ଚ,ମ,ଣିମା = ବୁଝିବା ।

୩୭ । ଖଡ଼କ (ପୋଥିପାଠ) । ୩୮ । ଏହି ପାଦଟି ମୂଂଳଅମ୍ ପୋଥିରେ ନାହିଁ । ୩୯ । ବୋଲି (ପୋଥିପାଠ) । ୪୦ । ବାହୁଡ଼ୀ (ପୋଥିପାଠ) ।

୪୧ । କଲ । (ପୋଥିପାଠ) ।

ବୈର ବୋଲଇ ମୋର ଦୋଷ ନାହିଁ,
ଇଚ୍ଛାବତୀ ନେଲା ମୋତେ କଢ଼ାଇ । ୭୧ ।
ଆଜ ବେଳତ ନଷ୍ଟପୁ ମରିବ,
ଇଚ୍ଛାବତୀକି ନଷ୍ଟପୁ ଦେଖିବ । ୭୨ ।
ତାର ସମ୍ପୂର୍ଣ୍ଣ ଚନ୍ଦ୍ରମାବଦନ,
କାମ ଦହିବ ଲୋଚନ ଅଞ୍ଜନ । ୭୩ ।
ଶୁଣ ଦୋସାଧୁ ବଚନ ମୋହର,
ଜଗନ୍ନାଥ[୪୨] ଶ୍ରବନ୍ତ ନିରନ୍ତର । ୭୪ ।
ନରେଶ ଜୟଚନ୍ଦ୍ର[୪୩] ନାମ ଯାହାର,
ବ୍ରହ୍ମା ଇନ୍ଦ୍ରଦେବ ଜଗୁ ସୋଦର । ୭୫ ।
ଅହେ ଦୋସାଧୁ ମୁହିଁ ଭାଗ୍ୟବନ୍ତ,
ଇଚ୍ଛାବତୀ ସଂଗତେ ପ୍ରୀତି ଜାତ[୪୪] । ୭୬ ।
ପୂର୍ବେ ଦଶଗିର[୪୫] କଲା ତରଜା[୪୬],
ହରିନେଲା ରାମଚନ୍ଦ୍ର ଭାରିଜା । ୭୭ ।
ସେକା ଯୁଦ୍ଧ ରଥରେ ବସାଇଲା,
ସେତେକକୁ[୪୭] ଦଶଶିର ଛେଦିଲା । ୭୮ ।
ମୋର ସେବକ ରେ ରଜତେ ମାତର,
ସୁଖ ଲଭିଲ କୁମାରୀ ସଙ୍ଗର । ୭୯ ।
ମୋତେ ବାଟରେ ଦେଖାଉକନା ପୁଣି,
ଜୀବ ଯିବାକୁ ମୁକତ ତରୁଣୀ । ୮୦ ।

---

୪୨ । ଜଗର୍ନାଥ (ପୋଥିପାଠ) ।
୪୩ । ଜେ ପୁଚ୍ଛନ୍ତ (ପୋଥିପାଠ) । ୪୪ । ଶୃଦଜାତ (ପୋଥିପାଠ) ।
୪୫ । ଦଶଗିଣ (ପୋଥିପାଠ । ୪୬ । ତରଜା = ତର୍ଜନା ।
୪୭ । ସେତେକକୁ = ଏଥି ନିମିତ୍ତ ।

ଶୁଣି ଦୋସାଧି ଖଡ୍ଗ ଝମକଲା,
ଆରେ ନଲଜ ତୋ[୪୮] ଘର ବୋଇଲା । ୮୧ ।
ଜୀବ ଯିବାବେଳେ କୃଷ୍ଣ ନ ଝୁରୁ,
ସ୍ତ୍ରୀ ଅବଳା ଘରକୁ ସୁମରୁ । ୮୨ ।
ଶୁଣି ଗୃଷ୍ଟ ମନେ ବ୍ୟଥା ପାଇଲା,
ଇଚ୍ଛାବତୀ ଘର ତୋତେ ହୋଇଲ[୪୯] । ୮୩ ।
ଯେଉଁ ଶ୍ରୀରାମ ନାମ ଧରୁ ନଚେୟ
ସେହି ଇଚ୍ଛା କୁ ଘବୁଥାଇ ନଚେୟ[୫୦] । ୮୪ ।
ପ୍ରେମମତ୍ତ ହୋଇଣ ରତ୍ନଶ୍ରେର,
ଉଭ ବାଟ ଶମଶାନ ଭୂମିର । ୮୫ ।
ଇଚ୍ଛାବତୀ ଯେ ମୋହ ପାଇଥିଲେ,
ଗୃଷ୍ଟ ମରୁଛି ବୋଲିଣ ଶୁଣିଲେ । ୮୬ ।
ଲାଜ ସଂକୋଚ[୫୧] ସମସ୍ତ[୫୨] ଛାଡ଼ିଲେ,
ଝରକାଠାରୁ ବାହାର ହୋଇଲେ । ୮୭ ।
ବସ୍ତ୍ର ଲୋଟି ପଡ଼ୁଅଛି ଭୂମିର,
ଫିଟି କବେଶ ଚରମେ[୫୩] ତାହାର । ୮୮ ।
ଯାଇ ଶମଶାନେ[୫୪] ନୃପତି ଜେମା,
ରାହୁ ଆବୋରିଲା ଯେହ୍ନେ ଚନ୍ଦ୍ରମା । ୮୯ ।

---

୪୮ । ତୋହ (ପୋଥିପାଠ) ।

୪୯ । ହୋଇ (ପୋଥିପାଠ) । ୫୦ । ଏହି ପାଦଟିର ଅର୍ଥ ସ୍ପଷ୍ଟ ଜଣାଯାଉ ନାହିଁ

୫୧ । ସକୋଚ (ପୋଥିପାଠ) । ୫୨ । ସସ୍ତ (ପୋଥିପାଠ) ।

୫୩ । ଚରମ = ପୃଷ୍ଠଭାଗ । ୫୪ । ସ୍ମସାନେ (ପୋଥିପାଠ) ।

ଦୈବଚକ୍ରରେ ଅଜ୍ଞାନ ଭାଗିଯାଇ,
ମୁଖ କମଳ ଆଣ୍ଟି[55] ନ ଦଶଇ । ୯୦ ।
କୁମରଙ୍କ ବୃତ୍ତାଂଶ ଶୋକକର,
ଆହା ପ୍ରାଣନାଥ[56] ମୋ ଯେତେ ସର । ୯୧ ।
ଆରେ ମୁଂ ଗୁରୁ ଅଟେ ପାପ ନାଶ,
ତୋର ଅଙ୍ଗ ଛୁଇଂଲ କେଣୁ[57] କଣ । ୯୨ ।
ମହେଶଙ୍କୁ ଖଣ୍ଡଚାପ କରଛୁ,
ତେଣୁ ମୁଂ ତୋତେ ସେବ ନ ପାରୁଛୁ[58] । ୯୩ ।
ଆରେ ଦୋଷାଧି ମୋର ବୋଲ ଶୁଣ,
ତୋହ ପାଦରେ ପଶୁଛୁ ଶରଣ । ୯୪ ।
ଦନ୍ତେ ତୃଣ ଧରଣ ମାଗଇ,
ଯେ ପରଦେଶୀ ସୁଜନ ଅଟଇ । ୯୫ ।
ଆରେ ଯେହାକୁ ମୋ ଆଗେ ନ ମାର,
ଯେବେ ମାରବୁ ଆଗେ ମୋତେ ମାର । ୯୬ ।
ଯେ ଯେ ପୁରୁଷମାନଙ୍କ ଉତ୍ତମ,
ମୋହ ଗୁରୁ କ ଯେହାକୁ ଭର୍ଜନ । ୯୭ ।
ତୋତେ ଲକ୍ଷେ କୋଟି ଧନ ଦେବଇଂ
ପଚବାସ୍ତ ପଣେ ଥିବ ବନୋଇ[59] । ୯୮ ।
ଗୁରୁବ୍ରହ୍ମଙ୍କୁ[60] ମୋତେ ଦାନ ଦିଅ,
ଯେବେ ନାଶିବୁ ଦୁଇ ପ୍ରାଣ ନଅ । ୯୯ ।

---

୫୫ । ଆଗ୍ରୁ ସୁନ୍ଦର ଅର୍ଥରେ ବ୍ୟବହୃତ । ୫୬ । 'ପ୍ରାଣନାଥ ମୋ' ପରବର୍ତ୍ତିରେ 'ମୋ ପ୍ରାଣନାଥ' ହେବା ଅଧିକ ସମୀଚୀନ ।
୫୭ । କେଣୁକଣ = କାହିଁପାଇଁ ଅର୍ଥରେ । ୫୮ । ପାରଛୁ (ପୋଥିପାଠ)
୫୯ । ବନେଇ = ବନାଇ ହୋଇ ।
୬୦ । ଗୁରୁ ବ୍ରହ୍ମା । (ପୋଥିପାଠ)

ଶୁଣି ଦୋସାଧି ବୋଲଇ ବଚନ,
ତୁ ଯେ କହୁଛୁ ମୋ ଆଗେ ଯେସନ । ୧୦୦ ।
ନଜ ବକଚ୍ଛିତ ନାହିଁ ତୋହର[୭୧],
କାର ବକିଷିତ ନାହିଂ ଆଚର । ୧୦୧ ।
ରାଜ୍ୟ ତ୍ରିଧଟ[୭୨] ହୋଇଲା ଅପାର,
ଗଜଜେମା ତାହା ସଙ୍ଗେ ପ୍ରଗୃର । ୧୦୨ ।
ଆନ ନୃପତ୍ତି ନାକେ ହାଚ[୭୩] ଦେବେ,
ଲକେ ଭୋଜଚକ୍ରବର୍ତ୍ତୀ[୭୪] ରହିବେ । ୧୦୩ ।
ଯେତ୍ତେ କୁଳକୁ କଳଙ୍କ ଥୋଇଲୁ,
କଷ୍ଟେଂ କୁକଟା ନାସ୍ତି ତୁ ହୋଇଲୁ[୭୫] । ୧୦୪ ।
ଜେମା ବୋଲନ୍ତି ଶୁଣ ମୋ ଉତ୍ତର,
ପିତା ଦେବେ ତ ମୋତେ ଯେକ ବର । ୧୦୫ ।
ମୋର ଆନ ବରରେ କାର୍ଯ୍ୟ ନାହିଂ,
ଯେତ୍ତେ ସୁଜାଣ ମୁଁ ପାଇବ କାହିଂ । ୧୦୬ ।
ଆରେ ପୃଥିରେ ଯେତେକ ନୃପତ୍ତ,
ଗୁରୁବ୍ରହ୍ମକୁ ଧ୍ୟାୟେ କରୁଥାନ୍ତି । ୧୦୭ ।
କଷ୍ଟେଂ ଯେହାକୁ ଯେବେ ତୁ ମାରୁ,
ସ୍ତ୍ରୀହତ୍ୟା ଅନେକ ତୁ ପାଇବୁ । ୧୦୮ ।
ଯେହା ମଲେ ସବ ସ୍ତ୍ରିୟ ମରିବେ,
ଆଉ ପୃଥିରେ କେ ଯେନ ରହିବେ । ୧୦୯ ।

---

୭୧ । ଏ ଦୁଇଟି ପାଦର ଅର୍ଥ ଆଦୌ ସୁସ୍ପଷ୍ଟ ନୁହେଁ ।
୭୨ । ତ୍ରିଧଟ = ପ୍ରଗୃର । ୭୩ । ହାଥ (ପୋଥିପାଠ)
୭୪ । ଚକ୍ରବର୍ତ୍ତୀ (ପୋଥିପାଠ) । ୭୫ । ପାଦ ଦୁଇଟିର ଜିସ୍ଥା ଥୋଇଲ' 'ହୋଇଲ' ମୁଂଜାହ୍ନମ୍ ପୋଥିରେ ଅଛୁ ।

ଇଚ୍ଛାବଶ ଦୋସାଧ୍‌ ଭଥା ହୋନ୍ତେ,
ଯେକ ବେତାଳ ମିଳାଲ୍‌ ଭୂଶରେ । ୧୧୦ ।
ଗୁରୁବ୍ରହ୍ମକୁ ଦେଖିଲ୍‌ ବେତ.ଳ,
ଯେତ ମଦନ ବ୍ରହ୍ମର ଦୁଳାଳ । ୧୧୧ ।
ଆହେ ଦୋସାଧ୍‌ ଯେହାକୁ ନ ମାର,
ରାଜା ଜାଣିମା ଯାୟେଂ ରକ୍ଷାକର । ୧୧୨ ।
ଯେହୁ ରାଜାର[୭୬] କୁମର ଅଟଇ,
ଯେହା: ମନକୁ ନାଗ ନ ଛଟଇ । ୧୧୩ ।
ପିତା ତେଜ ଅଇଲ ଯେତେଦୂର,
ଆସି ଯେଥେ ତ ଯାଉଅଛୁ ମାର । ୧୧୪ ।
ଯେତେ କହ୍ନି ବେତାଳ ଧାଇଂଗଲ୍ଲ,
ଭୋଜ ରାଜାର ଆସ୍ଥାନେ[୭୭] ମିଳାଲ୍‌ । ୧୧୫ ।
ରାଜା ସ୍ଵମୁରେ କବଉ୍ କହିଲେ,
ଭୋଜରାଜା ଶୁଣିଣ ମୋହଗଲେ । ୧୧୬ ।
ତାର କବଉ୍ ଶୁଣ ଭୋଜରାଯେ,
ଜାନୁ କମ୍ପଇ ଥରହର କାୟେ । ୧୧୭ ।
ତାକୁ ବୋଲନ୍ତ ମାଗ ଭ୍ରଟରାଯେ,
ଯାହା ମାଗିବୁ ଦେବଇଂ ନଷ୍ଟଯେ । ୧୧୮ ।
ଭ୍ରଟ ବୋଲଇ ଶୁଣ ନୃପବର,
ଯାହା ମାଗିବ ସତ୍ୟ ମୋତେ କର । ୧୧୯ ।
ରାଜା ବୋଲନ୍ତ ସତ୍ୟ ନରଧାର[୭୮],
ଗୁରୁବ୍ରହ୍ମ କୁମାରକୁ ନ ମାର । ୧୨୦ ।

---

୭୬ । ରାଜ୍ୟର (ପୋଥିପାଠ) । ୭୭ । ଆସ୍ଥାନେ (ପୋଥିପାଠ) ।
୭୮ । ନରଧାର=ପ୍ରତଜ୍ଞାପୂର୍ବକ, ଏକଥା ପ୍ରୟୋଗ ଅଦ୍ୟାପି ପ୍ରଚଳିତ

ଯେଞ୍ଚ ମଦନ ଗୁରୁବ୍ରହ୍ମ ନୃପତିଙ୍କୁ,
ଗୁରୁବ୍ରହ୍ମ ବୋଲି ତାର ନାତଯେ । ୧୨୧ ।
ପିତାଠାରୁ ମନସ୍ତାପେ[୬୯] ଅଇଲ,
ଯଞ୍ଚ ମନ ନଷ୍ଟ ନ ହୋଇଲା । ୧୨୨ ।
ରଥ ଗଜ ନବର ତା[୭୦] ବହୁତ,
ମହାପ୍ରତାପୀ ସେହୁ ଜଗନ୍ନାଥ । ୧୨୩ ।
ତାଙ୍କୁ ଯେବେ ମାରିବୁ ନରପତି,
ଆଉ ପାଇବୁ ଠିକ ନରପତି । ୧୨୪ ।
ରାଜା ଯେସନ ବଚନ ଶୁଣିଲେ[୭୧],
ବେଗେ ଦୋସାଧ୍ ଡକାଇ ଆଣିଲେ[୭୨] । ୧୨୫ ।
ଆରେ ଗୈରଙ୍କୁ ବେଗେ ଘେନିଆସ
ଯେତ[୭୩] ବଡ଼ ଲୋକର ଅଛେ ଶିଷ । ୧୨୬ ।
ଯଞ୍ଚ ଯେସନ ଦୋସାଧ୍ ଶୁଣିଲା,
ଗୁରୁବ୍ରହ୍ମଙ୍କୁ ବେଗେ ଘେନିଗଲା । ୧୨୭ ।
ଜଗନ୍ନାଥ ଆରତ ଫିଟାଇଲେ,
ଜେମା ଅନ୍ତଃପୁରକୁ ଚଳିଗଲେ । ୧୨୮ ।
ବେଗେ ଦୋସାଧ୍ କୁମରଙ୍କୁ ନେଲା,
ରାଜା ଛାମୁରେ ନେଇ ବଧାଇଲା । ୧୨୯ ।

---

୬୯ । ମନତାପେ (ପୋଥିପାଠ) ।

୭୦ । ରଥ ଗଜ ନବର ସେ ବହୁତ (ପୋଥିପାଠ) । ୭୧ । ଶୁଣିଲା (ପୋଥିପାଠ) ।

୭୨ । ଆଣିଲା (ପୋଥିପାଠ) । ୭୩ । ସେହୁ (ପୋଥିପାଠ) ।

ମହାରାଜା[୭୪] ଯେ ଭୋଜ ଚକ୍ରବର୍ତ୍ତୀ[୭୫],
ଚୈତ୍ର ସଙ୍ଗେ[୭୬] ଯେହ୍ନ ଭଜେ କରନ୍ତି । ୧୬୦ ।
ଦ୍ରବ୍ୟ ମାଜ୍ଜଣା ଶ୍ରାହ୍ନାନ[୭୭] ଭୋଜନ,
ରାଜା ଭୃଠକୁ ଯେହ୍ନ ସାବଧାନ । ୧୬୧ ।
ବସ୍ତ୍ର ଉଛବ ବାଧି ପରୁରନ୍ତି,
ଘନ ବନମାଳୀ ରସେ ଗାବନ୍ତି । ୧୬ ।



---

୭୪ । ମାହାରଜ (ପୋଥିପାଠ)

୭୫ । ଚକ୍ରବର୍ତ୍ତି (ପୋଥିପାଠ) । ୭୬ । ଚୈତ୍ର ସଙ୍ଗେ (ପୋଥିପାଠ)

୭୭ । ଶ୍ରାହ୍ନୀନ = ସ୍ନାନ ଅର୍ଥରେ ।

# ପଞ୍ଚମ ଛାନ୍ଦ

## ରାଗ—ମଙ୍ଗଳ ଗୁଜ୍ଜରୀ

ଶୁଣ ସାବଧାନେଣ[1] ପଣ୍ଡିତ ଭାଗ୍ୟବନ୍ତ ।
ଶ୍ରେଷ୍ଠ ଇଚ୍ଛାବତୀ ବିଭବଧି ଯେ ସମସ୍ତ ହେ । ୧ ।
ଚମ୍ପକ ନୃପ ଅଂଗ । ଦେଲେ ଶୁଣ ମନ୍ତ୍ରୀବର[2] ।
ଅନେକ ସମ୍ଭବେ ଶ୍ରେଷ୍ଠ ଇଚ୍ଛା ବଶ କର ହେ ॥ ୨ ॥
କୁଳୀନ[3] ପଣ୍ଡିତ ସେ ମହନ୍ତ ରାଜା ସୁତ ।
ଇଚ୍ଛାବତୀ କୁମାରୀ କ ଅଟଇ ବିହିତ ହେ ॥ ୩ ॥
ମଦନ ବ୍ରହ୍ମ ବୋଲଣ ସେହୁ ସେ ରାଜନ ।
ବୃନ୍ଦ ବ୍ରହ୍ମ ବୋଲ କରି ତାହାର ନନ୍ଦନ ହେ ॥ ୪ ॥
ନୋହିଲେ ଦଇବ ଭେଟାଇଅଛୁ ଆଣି ।
ପୂର୍ବର ଭିଆଣ ଯାହା ବିଧାତା ନିର୍ବାଣି[4] ହେ ॥ ୫ ॥
ଇଚ୍ଛାବତୀ ମନ ସ୍ନେହାଠାରେ ବନ୍ଧ ହେଲା ।
ଦୁହେଁ ଦୁହିଁଙ୍କ ସମାନ ନୃପତି ବୋଇଲା ହେ ॥ ୬ ॥
ପ୍ରସନ କରିଣ ରତ୍ନ ବେଦ ନିର୍ବାଢ଼ିବ[5] ।
ସମ୍ପୂର୍ଣ୍ଣ କରିଣ ଦଣ୍ଡ ପାବଚ୍ଛ କରିବ ହେ ॥ ୭ ॥
ବଚନ ଶୁଣୁଁଥିଁ ଦିବ୍ୟ ଦେନ ପଠର ।
ପାଠ ନେତ ମଣ୍ଡଣି ମଣ୍ଡିବ ସବୁଠାର ହେ ॥ ୮ ॥

---

୧ । ସାବଧାନେଣ (ପୋଥିପାଠ) । ୨ । ଶୁଣନ୍ତ ବର (ପୋଥିପାଠ) ।
୩ । କୁଳୀନ ( ପୋଥିପାଠ ) । ୪ । ନିର୍ବାଣି—ନିର୍ମାଣ ଅର୍ଥରେ ।
୫ । ନିର୍ବାଢ଼ିବ—ନିର୍ମାଣ କରିବ ।

ସୁବର୍ଣ୍ଣ ଯୋଗାଡ଼ମାନ ନିବାଢ଼[6] କରିବ ।
ବସ୍ତ୍ର ସମାପତ ବେଳେ ସମସ୍ତ କାଟିବ ହେ ॥ ୯ ॥
ରଥ ଗଜ ଚତୁରଙ୍ଗ ଦାସ ଦାସୀ ମୂଲେ ।
ସୁରଭି ମଞ୍ଚିଂପି ନେଇଣ ଦେବ ବେଦ ଛଳେ ହେ ॥୧୦॥
ଉଭରି[7] ଯେ ଦବ୍ୟରଙ୍ଗ ରତ୍ନ ଆସ୍ୱେ[8]ମାନ ।
ଗୃହକୁ ନିଯୋଗି ଯେଣେ ତୋଷ କର ମନହେ ॥୧୧॥
ଅନ୍ନଦାନ[9] ବସ୍ତ୍ରଦାନ ଅହର୍ନିଶି ଦେବ ।
ହୀନ ଅନାଥରେ ଦାନ ବହୁତ କରିବ ହେ ॥ ୧୨ ॥
ବନ୍ଧୁ ଯେ ସୋଦର ମୋର ବହୁତ ଅଛନ୍ତି ।
ଇଷ୍ଟବନ୍ଧୁ ନାସ୍ତି ବପ୍ର ସାମନ୍ତ ଅଛନ୍ତି ହେ ॥ ୧୩ ॥
ସମସ୍ତେ ଗୃହବନ୍ଧୁଙ୍କୁ ଯଉତୁକ ଦେବ ।
ଯେ ଯାହା ମାଗିବେ ତା ଭଣ୍ଡାରୁ ନେଉଥିବ[10] ହେ ॥୧୪॥
ଇଚ୍ଛାବତୀ ଗୃହ ବସ୍ତ୍ର ମୋହର ସୁଲଭ[11] ।
ଯେମନ୍ତ ଯୁଗ ଯୁଗାନ୍ତେ କଥା ରହିଥିବ ହେ ॥ ୧୫ ॥

---

୬ । ନିବାଢ଼=ପ୍ରସ୍ତୁତ ।

୭ । ଉଭରି ଶବ୍ଦର ଅର୍ଥ ଜଣାଯାଉ ନାହିଁ । କବି ବୋଧହୁଏ ଏଠାରେ ଜାତ କରିଲବା ଅର୍ଥରେ ବ୍ୟବହାର କରିଛନ୍ତି ।

୮ । ଆସ୍ୱେ=ଅଳଙ୍କାର । ଅଦ୍ୟାପି 'ଆସ୍ୱେଅଳଙ୍କାର' ପଦ ଗ୍ରାମ୍ୟଣ ଭାଷାରେ ବ୍ୟବହୃତ ହେଉଛି ।

୯ । ଅନ୍ନ (ପୋଥିପାଠ)

୧୦ । ଏହି ପଦରେ ବ୍ୟବହୃତ 'ଯଉତୁକ ଦେବ' ଓ 'ଭଣ୍ଡାରୁ ନେଉଥିବ' ସ୍ଥାନରେ 'ଦେବେ' ଓ 'ନେଉଥିବେ' ହେଲେ ଅଧିକ ସମୀଚୀନ ହେବ ।

୧୧ । ସୁଲଭ ଶବ୍ଦ ଓଡ଼ିଆ ଭାଷାରେ ସୁନ୍ଦର ଅର୍ଥରେ ବ୍ୟବହୃତ ହେଉଥିବାର ଏବେ ମଧ୍ୟ ପ୍ରମାଣ ମିଳେ । ଯଥା 'ଅଖି ସୁଲଭ' 'ଦାଣ୍ଡସୁଲଭ'

ବିଦ୍ୟ ଯେ ଜାଣେମାମାନେ ହୋଇଣ ସୁବେଶ ।
ଗୀତ ନାଟ୍ୟ ମଙ୍ଗଲ[୧୨] କରିବେ ଚଉପାଶ ହେ ॥୧୬॥
ମୁକୁତା ସ୍ୱରରେ[୧୩] ହେବ କାନ୍ଥ ନବାଡ଼ିବ ।
ରାମଚନ୍ଦ୍ର ଚନ୍ଦ୍ରପଟ୍ଟ ସମସ୍ତ ଲହିବ ହେ ॥ ୧୭ ॥
ଦଶଅବତାର ମହାଭାରତହିଂ ଥିବ ।
ଚନ୍ଦ୍ର ବୃନ୍ଦ କରିଣ ପ୍ରତିମା ଲେଖିବ ହେ ॥ ୧୮ ॥
ଚଣ୍ଡାଲ ବ୍ରାହ୍ମଣେ ଅଙ୍ଗ ସବୁ ବରଜିବ ।
ଯେମନ୍ତ ଦୁର୍ଜନ ତାହା ତେମନ୍ତ କରିବ ହେ ॥ ୧୯ ॥
ବିଦ୍ୟାବନ୍ତ ବ୍ରାହ୍ମଣ ପ୍ରୋହିତ ପାଠଯୋଗୀ ।
କବିତାମାନଙ୍କୁ[୧୪] ତୁମ୍ଭେ ଅଣିବ ବିଶ୍ୱାସି ହେ ॥ ୨୦ ॥
ନାନା ବିଧି କରି ଯେ ଭୋଜନ ସଞ୍ଜାଦେବ[୧୫] ।
ସନ୍ନ୍ୟାସୀମାନ ଯେ ସବୁ ଦେଉଂ[୧୬] ନ ସହିବ ହେ ॥୨୧॥
କେହି ନ ପାଇଲା ଯେବେ ଶୁଣିମଇଂ ।
ଦୋଷ ଅନୁରୂପେ ଦଣ୍ଡ ପାଇବଟି ସେହି ହେ ॥ ୨୨ ॥
ଯେମନ୍ତେ ଜଣା ଅମ୍ଭଂକୁ ନୋହେ ଲୋକାନ୍ତରେ[୧୭] ।
ଅଙ୍ଗ ବୋଧ କରି କାର୍ଯ୍ୟକରି ଯେ ଯାହାରେ ହେ ॥୨୩॥

---

୧୨ । ମଙ୍ଗଲ ଯେ (ପୋଥିପାଠ) । ୧୩ । କାନ୍ଥରେ ( ପୋଥିପାଠ ) ।

୧୪ । 'କବିତା' ଶବ୍ଦ ଏଠାରେ ବୋଧହୁଏ ଆଶୀର୍ବାଦ ଶ୍ଳୋକାବଳୀ ଅର୍ଥରେ ବ୍ୟବହୃତ ।

୧୫ । ସଞ୍ଜା=ବଶିଷ୍ଟ ଅତିଥିଙ୍କୁ ଦିଆଯାଉଥିବା ଖାଦ୍ୟୋପକରଣ ।

୧୬ । ଦେଉଂ=ଦେଉଥିଲେହେଁ ।

୧୭ । ଯେପରି କେହି ନିନ୍ଦା ନକରନ୍ତି ଏ ପାଦର ଅର୍ଥ ।

ଯେମନ୍ତେଣ ଗ୍ରାମ୍ୟ ସବୁ ମଣାଇଂ[୧୮] କହିଲେ ।
ଦଣ୍ଡପାଟ[୧୯]ମାନ ଠାବ ଠାବକୁ ପେଷିଲେ ହେ ॥୨୪॥
ନାନା ସାମଗ୍ରୀ ଯେ ନାନା ସମ୍ଭାର ଯେ ମାନ ।
ବଡ଼ ସମାପନ୍ତ ପାଚୟଂ ଖଟିବ ପ୍ରମାଣ ହେ ॥୨୫॥
ଆମ୍ଭ ଲଜ୍ଜାସର୍ମ[୨୦] ଗିନା ତୁମ୍ଭମାନଙ୍କର ।
ଯେମନ୍ତେ ବଡ଼ ଉତ୍ସବ ହୁଅଇ ସମ୍ଭାର ହେ ॥୨୬॥
ଯେମନ୍ତ ବୋଲିଣ ପାଟ ମନ୍ତ୍ରୀକିଂ କହିଲେ ।
ଶଙ୍ଖ ମହୁରୀ କାହାଳୀ ଦମାହିଂ[୨୧] ବାଜିଲେ[୨୨] ହେ ॥୨୭॥
ଢୋଲ ଯେ ଟମକ ସେ ବାଜଇ ବକ୍ରବାଣ ।
ମର୍ଦ୍ଦଳ କଂସାଳ ତାଳ ବାଦ୍ୟ ଗହ୍ଲ ଟାଣ ହେ ॥୨୮॥
ଶୁଭଲଗ୍ନ ଦେଖିଣ[୨୩] ସେ ଦିନ ଯେ ଖୋଳିଲେ ।
ପାଟ ଜଉତଷ ଉଛ ଆଗ୍ରହୀ ଖୋଳିଲେ ହେ ॥୨୯॥
ବଡ଼ ଦିନେ ଥାଇଂଣ ମଙ୍ଗଳ ବିଧି କଲେ ।
ଅମୃତ ଯେ ଗାଡ଼ିମାନ ସମସ୍ତହିଂ ଦେଲେ ॥୩୦॥
ଦିବ୍ୟ କନ୍ୟାମାନ ଯେ କୁସୁମ ଗନ୍ଧ ଘେନି
ବରକନ୍ୟା ଦୁହିଁଙ୍କ ମଙ୍ଗୁଳନ୍ତ[୨୪] କାମେନୀ ହେ ॥୩୧॥

---

୧୮ । ମଣାଇଂ = ବୁଝାଇ ।

୧୯ । ଦଣ୍ଡପାଟ — ସୈନ୍ୟ ବିଭାଗର ଉଚ୍ଚପଦାଧିକାରୀ ।

୨୦ । ଲଜ୍ଜା ସର୍ମ=ଲଜ ଓ ଶରମ । ଶରମ ଶବ୍ଦ ଯାବନିକ ବୋଲି ଓଡ଼ିଆ ଅଭିଧାନକାରମାନେ ମତ ଦିଅନ୍ତି । କିନ୍ତୁ ଗ୍ରାମ୍ୟ ଓଡ଼ିଆ ଭାଷାରେ ବିଶେଷ ପ୍ରଚଳନ ଦେଖାଯାଏ ।

୨୧ । 'ଦମା' ଶବ୍ଦ ଏଠାରେ ଦମାମା (ନାଗରା) ଅର୍ଥରେ ବ୍ୟବହୃତ ।

୨୨ । ବାଇଲେ (ପୋଥିପାଠ) । ୨୩ । ଖୋଳିଣ (ପୋଥିପାଠ) ।

୨୪ । ମଙ୍ଗଳନ୍ତ (ପୋଥିପାଠ) ।

ସେ ଧନ ଯେ ହେତେ ବିଧି ଅଚରିଲେ ରାଜେନ୍ଦ୍ର ।
ଆର ଧନ ବିଭ ସାମଗ୍ରୀ ଦେଲଣ[୨୫] ଅପେନ୍ଦ୍ର ହେ ॥୩୨॥
ବିଚାର ବେଦାନ୍ତର ବଚନେ ଭୋଜ ନୃପବର ।
କୃଷ୍ଣ ଇଚ୍ଛାବନ୍ତ ବିଧି କର ତତପର ହେ ॥ ୩୩ ॥
ସାରଣ ବ ଆନ କବି କର ସେବ୍ୟ ଯୋଗ ।
ବେଦରେ ଦେଖିଲେ ଯେ ସେମନ୍ତ୍ର ଯୋଗ ହେ ॥୩୪॥
ରାଜାଙ୍କର ପୁତ୍ରମାନେ ଯେତେ ବନ୍ଧୁଗଣ ।
ସୁପଣ୍ଡିତ ବିଦ୍ୟାବନ୍ତ ଜୋତିଷ ବ୍ରାହ୍ମଣ ହେ ॥ ୩୫ ॥
କି ଅବା କହିବା ଭୋଜ ରାଜାର ସମ୍ପତ୍ତି[୨୬] ।
ଦୁର୍ଗ ଅମରାଧିନାଥ ମଝେଁ ବିହରନ୍ତି ହେ ॥୩୬॥
ତାହାଙ୍କ ସମାନେ ଯେତେ ପାତ୍ର ରାଜାମାନେ ।
ଦେଖାଦରଶନେ[୨୮] ଦେଲେ ଅଇଲେ ଦହନେ ହେ ॥୩୭॥
ବେଦରେ ବିଜନ୍ମ ସେ ମଦନ ବ୍ରହ୍ମ ଶିଷ ।
ଭୋଜରାଜା କୋଳେ ଲକ୍ଷ୍ମୀ ହୋଇଣ ସୁବେଶ ହେ ॥୩୮
ଯଥାବିଧି ବାକ୍ୟ ଗୋଟି କରି ଉଚ୍ଚାରଣେ[୨୯] ।
ମହାବାକ୍ୟ ଉଚ୍ଚାରିଣ ମଣ୍ଡିଲେ ବ୍ରାହ୍ମଣ ହେ ॥୩୯॥
ଶଙ୍ଖେ ଜଳଥାଳ ଯେ କାଞ୍ଚନ ବିଧିମତେ ।
ଗୋଡ଼ଧୁଆ ଢାଳିଲେ ଶ୍ରାହାନର ଅଗ୍ରେ[୩୦] ॥୪୦॥
ହସ୍ତକୁ ବନ୍ଦନ ଯେ କରନ୍ତି ବିଦୁଜନ ।
ଲଜା[୩୧]ହୋମ କଲେ ତହିଁ ଶ୍ରାହାନ ଭୋଜନ ହେ ॥୪୧

---

୨୫ । ଦେନ (ପୋଥିପାଠ) । ୨୬ । ସମ୍ପତ୍ରୀ ( ପୋଥିପାଠ ) ।
୨୭ । ବିହନ୍ତ୍ରୀ (ପୋଥିପାଠ) । ୨୮ । ଦେଖାଦରଶନ = ଭେଟି ।
୨୯ । ଉଚ୍ଚର (ପୋଥିପାଠ) । ୩୦ । ଶ୍ରାହାନ ଅଗ୍ରରେ (ପୋଥିପାଠ) ।
୩୧ । ଲଜାହୋମ ଶୁଦ୍ଧପାଠ ।

ବରକନ୍ୟା ଯେକଠାରେ ବସନ୍ତି ବେଦୀରେ ।
ଯଉତୁକମାନ ନେଇଣ ବାଟିଲେ ସ୍ବମତିରେ ହେ ॥୪୨॥
ଇଷ୍ଟ ବନ୍ଧୁ କୁଟୁମ୍ବ ଯେତେକ ଯାଇଥିଲେ ।
ପାତ୍ରମନ୍ତ୍ରୀ ସମସ୍ତେ ଯେ ଯଉତୁକ ଦେଲେ ହେ ॥୪୩॥
ପାଟ ମହାଦେଈମାନ ସାଙ୍ଗେ ଅଛନ୍ତି ।
ବରକନ୍ୟା ବନ୍ଦାଇଣ ଭିତରକୁ ଯାନ୍ତି ହେ ॥ ୪୪ ॥
ପଞ୍ଚୁଗ୍ରାସୀ ସାରଣ ସେ ଗୃହେ ଇଚ୍ଛାବନ୍ତ ।
ବଚନ ବୁଝିଣ ରତ୍ନ ପଲଙ୍କେ ବସନ୍ତି ହେ ॥୪୫॥
ବେଭରେ ଯୋଗାଡ଼ମାନ ପଞ୍ଚ ଯେ ଅମୃତ ।
କୋଟି କୋଟି ଅନ୍ନ ଦାନ ଦେଲେକ ବହୁତ ହେ ॥୪୬
ସ୍ବଜେ ମଜ୍ଜେଦୋଂ ବଜେ ଇଚ୍ଛାବନ୍ତ ଗୃହେ ।
ଚଉଷଠୀ ବନ୍ଧେ ରତ କଲେକ ବହୁତ ହେ ॥ ୪୭ ॥
ସତ୍ୱେଲ ଚଉଠୀ ଅଷ୍ଟମଙ୍ଗଳଣ ବିଧି ।
ଗୃହ ବନ୍ଦାପନା ତହିଁ କଲେ ପରସିଦ୍ଧି ହେ ॥୪୮॥
ନୃପତିର ଦୁତ ଅଛି ଗୃହେ ଇଚ୍ଛାବନ୍ତ ।
ନିଷ୍ଠତେଣ ସାବଧାନେ ଥାଇ ଦ୍ୱାର କତ ହେ ॥୪୯॥

---

୩୨ । ଅଶ୍ରୁ ( ପୋଥିପାଠ ) ।

୩୩ । ମଢ଼ଶେଯ — ମଧୁଶଯ୍ୟା ।

୩୪ । ଚଉସଠି (ପୋଥିପାଠ), ବିବାହର ଚତୁର୍ଥ ଦିବସକୁ ଚତୁର୍ଥୀ ବା ଚଉଠୀ ବୋଲି କୁହାଯାଏ । ଅଷ୍ଟମଙ୍ଗଳଣ — 'ଆଠ ମଙ୍ଗଳା' ବୋଲି ଦେଶଜ ଭାଷାରେ କଥିତ । ବିବାହର ଆଠଦିନ ପର୍ଯ୍ୟନ୍ତ ମଙ୍ଗଳ-କୃତ୍ୟ ହେଉଥାଏ । ଅଷ୍ଟମ ଦିବସରେ ତାହା ଉଦ୍‌ଯାପନ ହୁଏ ।

୩୫ । ବିବାହର ପରବର୍ତ୍ତୀ ଶୁକ୍ଳ ତୃତୀୟା ଦିନ ବରକନ୍ୟା ଚନ୍ଦ୍ରଙ୍କୁ ପୂଜା କରନ୍ତି ।

ଆପଣାର ତୁଳ ତାହ୍ନଂ ଅଧିକ ଦେବେଇ ।
ଜୀବଆତ୍ମା ଇଚ୍ଛାବଶ ଗୃହଭ୍ରାନ୍ତ ହୋଇ ହେ ॥୫୦॥
ଯେମନ୍ତେଣ ଗୃହ ଇଚ୍ଛା ହେସନ ସମୟେ ।
ଇଚ୍ଛାକୁ ବୋଲଇ ଗୃହ କହବ କଥାଏ ଗୋ ॥୫୧॥
ମନରେ ଅନ୍ତର ତୁ ଗୋ ନଧରିବୁ ସଖି ।
ମୋହର ଜୀବନ ଅଗୋ ଅଟ ଚନ୍ଦ୍ରମୁଖି ଗୋ ॥୫୨॥
ଲୁଟ[36] ହୋଇ ଯିବ ମୁହିଂ କୁରଙ୍ଗୀ ଲୋଚନା ।
ମନେ ଆନ ନ ଧରିବୁ ଶୁଣରେ ମିତଣି ଗୋ ॥୫୩॥
ବୋଲଇ କୁମାରୀ କନ୍ୟା ଯେତେକ ବଳେପୀ[37] ।
କହକନା ଶୁଣ ତୁ ମୋହର ପ୍ରାଣପତି ହେ ॥୫୪॥
କୁମର ବୋଲଇ ଶୁଣ ନୃପତି କୁମାରୀ ।
( ଦାହାଧୁ ହେ ନେଲ ମୋତେ ମେଘାନଧୁରୀ ଗୋ ॥୫୫॥
ସେଠାରେ ଭେଟ ଦେଲ ଦ୍ରୁହାରନ୍ତା ମୋତେ ।
ଯେ ଶିଶ୍ରୀ ସମସ୍ତ ଗୁଡ଼ ଯାଆନ୍ତି କେମନ୍ତେ ଗୋ ॥୫୬॥
ମୁହିଂତ ଅଟଇ ନାସିମାଙ୍କ[38] ଦେହଦେଣୀ ।
ମୋହ ପାଇଂ କଂପା ତୁ କରନ୍ତୁ ସୁଭ୍ରକେଶୀ ଗୋ ॥୫୭॥
ତାହା ଶୁଣି କୁମାରୀର ଦେହ ଥର ହର ।
ସେ ସ୍ଥାନ ଅଟଇ ମୁଖ ଗୁଆଂର ପାମର ହେ ॥୫୮॥
ପିତା ଭୋଜରାୟେ ମୋ ଉପାୟେ ଚକ୍ରବର୍ତ୍ତୀ ।
ତାହାକୁ ତେଜିଣ ଗଲ[39] ମେଟାନ କଡି ହେ ॥୫୯॥

---

୩୬ । 'ଲୁଟକର' ପାଠ ହେଲେ ସଙ୍ଗତ ହୁଅନ୍ତା ।
୩୭ । ବଳେପୀ = ଗୋପନବାସୀ ।
୩୮ । ଛନ୍ଦୁବ.ସି (ପୋଥିପାଠ) । ୩୯ । ଗଲ୍ପ (ପୋଥିପାଠ) ।

କାଳେ ଅପଙ୍କାରତ ରହିଲ ମହାସ୍ଥଳେ ।
ଏମନ୍ତ ବୋଲଣ ଲେଟି ପଡ଼ିଲ ଭୂତଳେ[୪୦] ॥୭୦॥
ଦେଖି ବୃନ୍ଦବୃନ୍ଦ ଯେ କମ୍ପଣ ଥରହର ।
ଏ ମାନ ଦୁଆଁଇବାକୁ ଶକତ କାହାର ହେ ॥୭୧
ଦୀନ ବନମାଳୀ ଏହୁ ଗୀତରେ ଗାଇଲେ ।
ଶ୍ରୀ ଜଗନ୍ନାଥ ଚରଣେ ଶରଣ ପଶିଲେ ହେ ॥୭୨॥



---

୪୦ । ଧରଣି (ପୋଥିପାଠ) ।

ସ୍ୱୁ: ଭ: ୮

# ଷଷ୍ଠ ଛାନ୍ଦ

## ରାଗ—ଚନ୍ତ୍ରା ଦେଶାକ୍ଷ

ଏଥୁଅନନ୍ତରେ ରସିକ ଜନ ।
କଣ୍ଠବାଣୀ ଶୁଣି ଇଚ୍ଛାବତୀର ମନ ।୧।

ନ ଛୁଟଇ ଗନ୍ଧ ଯେ ଚନ୍ଦନ ବେସନ[୨] ।
ଅଣଚୃଶ[୩] ଶବ୍ଦୁ ବାଧା ନାହିଁ ତା ଗ୍ୟାନ ।୨।

ବେଦନ କରଇ ଧାତା ଯେହ୍ନା ସେ କଲ ।
ରସଭଗ୍ନ କର କାନ୍ତ ଯେହ୍ନା[୪] ବୋଇଲ । ୩ ।

ତେକବ ଜୀବନ ଆଜ କଣ୍ଠ କି କାର୍ଯ୍ୟ ।
ଯେହ୍ନାଙ୍କ ଉପରେ ହତ୍ୟା ଦେବଇଁ ଆଜ । ୪ ।

ତାହା ଶୁଣି ବୃଦ୍ଧ ବ୍ରହ୍ମ ଅତି ବନଯେ ।
ମୋହର ଅପ୍ରାଧ ତୁ ନଧର ନିଷ୍ଟଯେ । ୫ ।

ତୋର ବିନା ସାହା[୫] ମୋର ଆନ କେ[୬] ଅଛୁ ।
ତୋହର ପୁଣ୍ୟରେ ଯେତେ ଭାଗ୍ୟ ଅର୍ଜିଛୁ ।୬।

---

୧ । ଅନ୍ତରେ (ପୋଥିପାଠ) । ୨ । ବେସନ – ବ୍ୟସନ ଅର୍ଥରେ ।

୩ । ଏ ପାଦର ଅର୍ଥ ସୁସ୍ପଷ୍ଟ ନୁହେଁ ଉଭୟ ପୋଥି ସମାନ ପାଠ ।

୪ । ଯେହ୍ନା ସେ ବୋଇଲ (ପୋଥିପାଠ) ।

୫ । ସାକ୍ଷୀ (ପୋଥିପାଠ) ।

୬ । କେହ୍ନ (ପୋଥିପାଠ) ।

ପିତା ମାତା ତେଜି ମୁଂ ଅଇଲି ତୋ ପାଶ[୬] ।
ସୁଜାଣ ସୁନ୍ଦରୀ ତୁ ନକର ନିରାଶ । ୭ ।
ଗୁରୁଙ୍କର ଧର୍ମଶିକ୍ଷ ତୋହର ସିନା ।
ଦରିଦ୍ର ଧନ ତୁ ଜୀବ ମରଣ କିନା । ୮ ।
ତୋର ପୁଣ୍ୟବଳେ ମୁରୁଁ ବର୍ତ୍ତିଲି[୯] ।
ସାଗରେ ଝାସିଥିଲିକୁ ତୋତେ ପାଇଲି ।୯।
କାଣ୍ଟିକି ଉପବନେ ଫୁଲ ତୋଳିଲି ।
ମୋତେ ଡଂଶିଲା ଗୁଡ଼ ବୃକ୍ଷ ପରେ ଉଠିଲି ।୧୦।
ତୋହ କୁଚ ଦେଖି ସଖି ମୋହ ହୋଇ ଗଲି ।
ପ୍ରାଣତେଜି[୧୦] କରି ମୁଂ ଭୂମିରେ ପଡ଼ିଲି ।୧୧।
ବୃକ୍ଷରୁ ଓହ୍ଲାଇ[୧୧] ମୋତେ ସଚେତ କଲୁ ।
ଲତାରସ ଦେଇଂ ଭୃତ୍ୟପଣେ ରଖିଲୁ ।୧୨।
ଗୁରୁଙ୍କ ବଚନେ ବାଣୀ ନଇଲି ମୋତେ ।
ଚତୁର ସିଦ୍ଧାଣ[୧୨] ବଞ୍ଚାଇଲୁ ତୁରିତେ ।୧୩।
ବଚନେ ବୋଇଲି ତୁ ଯେ ସତ୍ୟ କରିବୁ ।
ମୁଂ ଯାହା ମାଗିବି ତାହା ନାହିଂ ନ କରିବୁ ।୧୪।
ସେହିତେବେ ବଚନ ସତ୍ୟ କଲୁ ସୁନ୍ଦରି !
ଆପଣେ ବରଣ ମୋତେ କରିଲୁ[୧୩] ନାରି ।୧୫।

---

୭ । ତୋର ପ ସ (ପୋଥିପାଠ)  ୮ । ମୁରୁ – ମୁଖରୁ ।
୯ । ବଞ୍ଚିଲି ଅର୍ଥରେ ।
୧୦ । ପ୍ରାଣତେଜି 'ସ୍ଥାନରେ' 'ଜ୍ଞାନତେଜି' କିମ୍ବା 'ଜ୍ଞାନହରା' ହେଲେ ଅର୍ଥ ସଙ୍ଗତ ହେବ ।
୧୧ । ଓହ୍ଲାଇ (ପୋଥିପାଠ) ।
୧୨ । ଚତୁର ସିଦ୍ଧାଣ ରୁ (ପୋଥିପାଠ) ।
୧୩ । ହୋଇଲି (ପୋଥିପାଠ) ।

ଗୁରୁଙ୍କ ବଚନେ ସଖି ଦୁହେଁ ବିଚ୍ଛେଦ
ତୋର ମୋ ବିଚ୍ଛେଦ ସିନା କଲଙ୍କ ଭେଦ ।୧୬।
ମାଳା ଦେଇଥିଲୁ ଅମ୍ବୁବତୀର ହାଥେ ।
ମନ ବନ୍ଧ କର ସେହୁ[୧୪] ଆଣିଲା ମୋତେ ।୧୭।
ସ୍ୱେକକାଠି ପୁରେ ତୋର ପାସେ ମିଳିଲି ।
ଭୂମିରୁ[୧୫] ତୋଳିଣ ତୋତେ କୋଳେ ଧଇଲି ।୧୮
ମୋତେ ଦେଖି ଶଶିମୁଖି ତେଜିଲୁ ଶୋକ ।
ଅମ୍ବୁବତୀ ବିନୁ ଅନ୍ୟ ନ ଜାଣନ୍ତି ଲୋକ ।୧୯।
ଦିବ୍ୟ ବେଶ ହୋଇ ମୋତେ ପଲଙ୍କେ ଘେନି ।
ରତି ରସ ପ୍ରମାଣେ[୧୬] ପୁହାଉ ରଜନୀ ।୨୦।
ଜାଣୁଁ କି ଦୋଷାଧୁ ଯେ ଧଇଲା ମୋତେ ।
ସ୍ୱେକକାଠି ମେଢ଼କୁ ଗମିଲା କେମନ୍ତେ ।୨୧।
ମୋର ଅପ୍ରମିତେ[୧୭] ତୋର ଜୀବନ ନାହିଁ ।
ତୋର ପୁଣ୍ୟ ବଳେ ଉହୁଁ ତରିଲି ମୁହିଁ[୧୮] ।୨୨।
ମୁଁ ଘର ଗୁଆଁର ତ ନ ଜାଣଇ କିଛି ।
ମୋହର ଘର ଦୋଷ କ୍ଷେମା କର ମୃଗାକ୍ଷି ।୨୩।

---

୧୪। ସେ (ପୋଥିପାଠ) ।
୧୫। ଭମିରୁ (ପୋଥିପାଠ) ।
୧୬। 'ପ୍ରମାଣେ' ପରିବର୍ତ୍ତେ 'ପ୍ରଦାନେ' ହେବା ଅଧିକ ସମୀଚୀନ ।
୧୬। ଭୃଶତେ ପୋଥିପାଠ ) ।
୧୭। ଅପ୍ରମିତ ଶବ୍ଦର ପ୍ରକୃତ ଅର୍ଥ ଅନୁସାରେ ଏଠାରେ ପ୍ରୟୋଗ ହୋଇନାହିଁ । ଏଠାରେ 'ବ୍ୟତିରେକେ' ଅର୍ଥରେ ବ୍ୟବହୃତ ହୋଇଛି ।
୧୮। ଏ ପାଦର ଅର୍ଥରେ ପୂର୍ବାପର ସଙ୍ଗତି ନାହିଁ ।

ମାଳତୀ ମଧୁପ ମଧୁ ମାଳତୀ ଜାଣି ।
ମୋ ଛାର ପାମର ତୁ ଯେ ପୁଣ୍ୟ ତରୁଣୀ । ୨୪ ।
ଅମୃତ ବାସନା କ ମଣ୍ଡୁକ ଜାଣଇ ।
ବାସନା ନଜାଣି ତଥି ପାରୁଷେ ଥାଇ । ୨୫ ।
ଅନ୍ୟ କଛୁ ନ ବୋଇଲ କମଳ ମୁଖୀ ।
ଜଣ୍ଡିତ କଥାକୁ ମାନ କମାଇଂ ଦୁଃଖୀ । ୨୬ ।
ଜଳରେ ଭସିଲ ବୃକ୍ଷ ଛୁପିଲ୍‌[୧୯] ଆଣି ।
ପ୍ରତିପାଳି ନ ପାରିଲ୍‌[୨୦] ଉଧାଡୁ ପୁଣି । ୨୭ ।
ପ୍ରଭୁ ହେଲେ ଭୃତ୍ୟ ଦୋଷ କରଇ କ୍ଷେମା ।
ସୁକୁମାର ସୁନ୍ଦରୀ ତୁ ନୃପତି କେମା । ୨୮ ।
ଅନେକ ପ୍ରକାର ଗୃହ ବିଚନାଇ କଲ ।
ତଥାପି କୁମାରୀ ମନୁ ତାପ ନଗଲ୍‌[୨୧] । ୨୯ ।
ଗୁଣ ସୁମରଣେ ଗୃହ ବନୋଇ କଲ ।
ତଥାପି ପ୍ରିୟାର ମନୁ ତାପ ନଗଲ । ୩୦ ।
ଗୁଣ ସୁମରଣ ଗୃହ ବନୋଇ କଲ ।
ତଥାପି କୁମାରୀ ମନୁ ତାପ ନଗଲ । ୩୧ ।
ଗୁଣ ସୁମରଣ ଗୃହ ତୋଳି ଧଇଲ ।
ନୟନର ଜଳ ତେଜପାଦ ଧୋଇଲ । ୩୨ ।
ଅନୁମାନ[୨୨] ଘେନଣ ଯେ ନୃପତି ବାଳୀ ।
ଗୃହର ଶିର କମଳ ଧଇଲ ତୋଳି । ୩୩ ।

---

୧୯ । ଶ୍ରେପିଲୁ ଶୁଦ୍ଧ ପଠ । ୨୦ । 'ପାରଣ' ଅର୍ଥରେ ।
୨୧ । ୨୯, ୩୦, ୩୧ ପଦର ଅର୍ଥ ସମାନ । କିନ୍ତୁ ବୁଝିହେଉନାହିଁ କି ପୋଥିରେ ଏ ଦ୍ଵିରୁକ୍ତ ଦୋଷ ଥିବାର ଦେଖାଯାଏ ।
୨୨ । 'ଅନୁମାନ ଘେନଣ' ପଦବର୍ତ୍ତେ 'ମନୁ ମାନ ତେଜଣ' ହେଲେ ଅର୍ଥ ସୁସ୍ପଷ୍ଟ ହେବ ।

ବୋଇଲ କୁମାରୀ ଭାଟ ହେତୁର ଅଛୁ ।
ମାନ ମୋର ଦୁଙ୍ଖାଇଲୁ କରଣ ହେତୁ । ୩୪ ।
ଇଚ୍ଛାବତୀ ସଗମାନ ତମ ଗ୍ଳଡ଼ିଲ ।
ଭାଟକୁ ସଙ୍ଗେ ଦେନଣ ବେଣି ହୋଇଲ । ୩୫
ମାଜଣା ମୋଣହିଂ ସାରି[13] ଦବା ବେସନ[14] ।
ସ୍ଵପୁର ବଡଆ ବେନ କଲେ ଭୋଜନ । ୩୬ ।
ରତ୍ନ ପଲଙ୍କରେ ଯାଇ ଶୟନ[15] କଲେ ।
ନାନା ବାଦ୍ୟ ସୁରଙ୍ଗରେ ଦୁନ୍ଦେଂ[16] ମାତଲେ ।୩୭।
ଗୁରୁଙ୍କୁ ଧନ ବସନ ଅନେକ ଦେଲେ ।
ଭାଟ ଇଚ୍ଛାବତୀ ଠାରୁ[17] ପାଦେ ସେବଲେ । ୩୮ ।
ଆମ୍ଭେ ତୁମ୍ଭ ସୁତ ସୁତା ଗୁରୁ ଗୋସାଂଇ ।
ତୁମ୍ଭର ଧର୍ମରୁ ସିନା ସ୍ୱେମନ୍ତ ହୋଇ । ୩୯ ।
ଭାଟକୁ ନୃପତି ତହିଂ ଅନେକ ଦେଲେ ।
ଧନ ବସ୍ତ୍ର ଅଳଙ୍କାର ଅଶ୍ୱହିଂ ଦେଲେ । ୪୦ ।
ଆହେ ଭାଟ ଶ୍ରେଷ୍ଠ ତୁମ୍ଭ ମହାତ ଜନ ।
ତୁମ୍ଭର ବଚନେ ଶାନ୍ତ ଆମ୍ଭର ମନ । ୪୧ ।
ଇଚ୍ଛାବତୀ ଭାଟ ବେଭ ବଧି[18] ବୃତ୍ତାନ୍ତ ।
ମଦନ ବ୍ରହ୍ମ[19] ରାଜାକୁ କହ ସମସ୍ତ । ୪୨ ।

---

୧୩ । ଗ୍ରୁନ୍ଥି (ପୋଥିପ.ଠ) ଶୁକ୍ଳପ.ଠ । ୧୪ । ବେସନ=ବ୍ୟସନ ଅର୍ଥରେ ।
୧୫ । ସ୍ୱେପ୍ନ (ପୋଥିପ ଠ) ।
୧୬ । 'ଦୁନ୍ଦେଂ' ଅକ୍ଷର ଦୁଇଟି ପୋଥିରେ ନାହିଁ ।
୧୭ । ଘନ (ପୋଥିପାଠ) । ୧୮ । ବନ୍ଧଣଶତ (ପୋଥିପ:ଠ) ।
୧୯ । ମର୍ଦ୍ଦଳ ବ୍ରହ୍ମ (ପୋଥିପ:ଠ)

ଯେହ୍ବା ଶୁଣି ଭ୍ରୂଠ ଅଗ ହୋଇଣ ଗଲା ।
ଭ୍ରୂଠ ମାତା ପିଃ । ଅଗେ ଯାଇଂ କହିଲା । ୪୩ ।
ଇଚ୍ଛାଚରି ଭ୍ରୂଠ ଯେକ କାଠି ମଧର ।
ନାର୍ଭରେ ରହିଲେ ଭୋଜ ନୃପତ୍ତ ଦୁର । ୪୪ ।
ଯେକ ଦିନେ ଭ୍ରୂଠ ବୋଲେ ଶୁଣ କୁମାରୀ ।
ପିତାଙ୍କୁ ଜଣାଅ ଯିବା ଆମ୍ଭର ପୁରୀ । ୪୫ ।
ମାତାଙ୍କ ସ୍ମୁରେ ଯାଇଂ ବେଗେ ଜଣାଅ ।
ବନସ୍ତ ହୋଇ କହିବ ମେଲାଣି ଦିଅ । ୪୬ ।
ଯେହ୍ବା ଶୁଣି ଜେମା ଗଲେ ମାତାଙ୍କ ପାସ ।
କୁଆଇଂ ବୋଇଲେ ଯିବୁ ଆମ୍ଭର ଦେଶ । ୪୭ ।
ଏହ୍ବା ଶୁଣି ରାଣୀ ରାଜା ଅଗେ ଜଣାଇଂ ।
ନଜ[୩୦] ଦେଶେ ଯିବେ ତୁମ୍ଭ ଜେମା କୁଆଇଂ ।୪୮।
ଆମ୍ଭ ଘରେ ଥିବାର ତ ନୋହେ ବହିତ ।
ସେ ମହାରାଜା ମଦନ[୩୧] ବ୍ରହ୍ମର ସୁତ । ୪୯ ।
ଶୁଣି ଭୋଜ ନୃପ ମନେ ହରଷ ହେଲେ ।
ପଣ୍ଡିତ ହକାରି ଶୁଭ ଲଗ୍ନ ବୁଝିଲେ । ୫୦ ।
ରଥ ଗଜ ତୁରଙ୍ଗ ଯେ ପାଦାନ୍ତ୍ର ମାନ ।
ଦାସ ଦାସୀ ମହିଂଷି ସୁରଭି ଗହନ[୩୨] । ୫୧ ।
ଅମ୍ବରରତ୍ନ ହାନ୍ଦୋଳା ବିଚିତ୍ର ଗ୍ଳାନସୁଣି[୩୩] ।
ଧନ ବସ୍ତ୍ର ଅଲଙ୍କାଂର ଜେ ପାଟରେ ଗଣି । ୫୨ ।

---

୩୦ । ନଯେ (ପୋଥିପାଠ) ।
୩୧ । ସେ ମହାରଯା ବ୍ରହ୍ମରଜାର ପୁତ (ପୋଥିପାଠ) ।
୩୨ । ‘ସୁରଭି ଗହନ’ର ଅର୍ଥ ସୁସ୍ପଷ୍ଟ ନୁହେଁ ।
୩୩ । ଭ୍ରଉଣୀ ଅର୍ଥରେ ।

ନିଜ ମାତା ମାନେ ଯେ ସମସ୍ତେ ଅଇଲେ।
ବର କନ୍ୟା ବନ୍ଦାଇ[୩୪] ଉପହାର ଦେଲେ । ୫୩ ।
ଅମୃତ ଯୋଗାଡ଼ ଭୁଞ୍ଜି[୩୫] ଇଚ୍ଛା କୁମାର ।
ଦିବ୍ୟ ବେଶ ହୋଇଣ ହୋଇଲେ ବାହାର ।୫୪।
ମତ୍ତହସ୍ତୀ ଉପରେ[୩୬] ମଣ୍ଡ୍ରିଣି ମହାଡ଼ ।
ପାଟ ନେତ ମଣ୍ଡ୍ରିଣି ମଣ୍ଡ୍ରିଲେ ଓହାଡ । ୫୫ ।
ଆଲଟ ଚାମର ପଙ୍ଖା ଢାଳନ୍ତି ନାରୀ ।
ମଣ୍ଡପରେ ବିଜେ କଲେ ଗୃଠ କୁମାରୀ । ୫୬ ।
ଢାଙ୍କିଲ ଠମକ ନିଶାଣଙ୍କ ଯେ ଭେରୀ ।
ଘଣ୍ଟ ଜମ[୩୭] ବାହାକ[୩୮] ମୃଦଲ[୩୯] ମହୁରୀ । ୫୭ ।
ବାଦ୍ୟନାଦ ଶବଦେ ବ୍ରହ୍ମାଣ୍ଡ କମ୍ପିଲା ।
ଚତୁରଙ୍ଗ ବଳ ଥାଟ[୪୦] ଘେନି ଚଳିଲା । ୫୮ ।

---

୩୪ । ବନ୍ଦାଇଣ (ପୋଥିପାଠ) ।

୩୫ । ଭୁଞ୍ଜାଇଣ (ପୋଥିପାଠ) ।

୩୬ । ଉପରେ ଯେ (ପୋଥିପାଠ) ।

୩୭ । ଜମ — ମଙ୍ଗଳ ।

୩୮ । ବାହାକ — ବାଜା ବଜେଇବା ଲୋକ । କିନ୍ତୁ ଏଠାରେ କୌଣସି ବାଦ୍ୟ ବିଶେଷ ଅର୍ଥରେ କବି 'ବାହାକ' ପଦଟିକୁ ବ୍ୟବହାର କରିଛନ୍ତି । ଅନ୍ୟଥା ଅର୍ଥ ସଙ୍ଗତ ହେବ ନାହିଁ ।

୩୯ । ମୃଦଲ — ମର୍ଦ୍ଦଳ ଶବ୍ଦର ପ୍ରାଚୀନ ଉଚ୍ଚାରଣ ।

୪୦ । ଥାଠ (ପୋଥିପାଠ) ଥାଟ — ସୈନ୍ୟ ।

ନୃପତ ମାଗ୍ଲେଟି କନ୍ଦୁହୂର[୪୧] 'ଅଇଲେ ।
କୁମାସ୍ତ୍ରଙ୍କ ଦେଖି କ୍ରୋଧ[୪୨]' ଅନେକ କଲେ ।୬୯।
ଗୃଠକୁ ବୋଇଲେ ଆମ୍ଭ ଦୋଷ ନାଟର ।
ଇଚ୍ଛାବତୀ ଦେନ ତୁମ୍ଭେ ସୁରାଜ୍ୟ କର । ୭୦ ।
ଦୋଷାଦୋଷ ଅପ୍ରାଧ ଯେ ଷେମା କରିବ ।
ଇଚ୍ଛାବତୀ ଦୋଷ କଲେ ସବୁ ସହିବ । ୭୧ ।
ସୈୁମନ୍ତ ବୋଲଣ ରାଜା ସବୁ କହିଲେ ।
ଝିଅ ସଙ୍ଗେ ଜେଷ୍ଠ[୪୩] କୁମାରକୁ ପେଷିଲେ । ୭୨ ।
ମଦନ ବ୍ରହ୍ମ ରାଜ୍ୟକୁ ଚଳଣ ଗଲେ ।
ଶୁଭ ଯୋଗେ କଟକ ପ୍ରବେଶ ହୋଇଲେ । ୭୩ ।
ଶୁଣିଣ ଡଗର ରାଜା ଆଗେ ଜଣାଇଁ ।
ଗୃହ୍ନବ୍ରହ୍ମ ଇଚ୍ଛାବତୀ ଦେନ ଆସଇ । ୭୪ ।
ଆଗେ ଯାଇ ସବୁ ଭାଟ କହୁଣ ଥିଲେ ।
ଶୁଣିଣ ମଦନବ୍ରହ୍ମ ଠାଟ ସାଜିଲେ । ୭୫ ।
କନ୍ଦୁହୂରେ ଦୁଇ ଠାଟ ହୋଇଲେ ଭେଟ ।
ବାଦ୍ୟର ଶବଦେ ନଗ୍ର ଅଟ ଉଛାଟ । ୭୬ ।
ଗୃହ୍ନବ୍ରହ୍ମ ପିତା ପାଦେ ଯାଇଁ[୪୪] ଲେଟିଲେ ।
କୁମାସ୍ତ୍ର ସହିତେ ପାଦ ଧୂଳି ଘେନିଲେ । ୭୮ ।

---

୪୧ । 'ନୃପତ ପାଗ୍ରେଟି କନ୍ଦୁହୂର ଯେ ଗଲେ' ହେବା ଅଧିକ ଅର୍ଥ-ଦ୍ୟୋତକ ।
୪୨ । ଏଠାରେ 'କ୍ରୋଧ' ସ୍ୱର ଅର୍ଥରେ ବ୍ୟବହୃତ ନହୋଇ ଶୋକର ଆବେଗ ଅର୍ଥରେ କବି ପ୍ରୟୋଗ କରିଥିବାର ଅନୁମାନ ।
୪୩ । ଜ୍ୟେଷ୍ଠ ଶବ୍ଦର ଅପଭ୍ରଂଶ ।
୪୪ । ଗୃହଂ (ପୋଥିପାଠ) ।

ଇକ୍ଷ୍ୱାକୁ ଦେଖିଣ ମନେ ବଡ଼ ହରଷ ।
ହେବା ବନୁ ପୁତ୍ର ଆଜ କରିବ କସ । ୬୯ ।
ହେମତ ବୋଲି ବରକନ୍ୟା ଘେନିଣ ଗଲେ ।
ଅପଣା ମନ୍ଦିରେ ସେ ପ୍ରବେଶ ହୋଇଲେ । ୭୦ ।
ବରମାତ୍ୟ ସଙ୍ଗେ ରାଣୀମାନଙ୍କୁ ଘେନି ।
ବର କନ୍ୟାଙ୍କୁ ବନ୍ଦାଇଂ ଗଲେ କାମିନୀ । ୭୧ ।
ସହଚରୀ ଘେନି ସାନ ନବରେ ଗଲେ ।
ବିଚିତ୍ର ମନ୍ଦିରେ ବାସ ଦେଇ ଦେଲେ । ୭୨ ।
ଶ୍ରୀହାନ ଭୋଜନ ସାରି ବିବିଧ ବେଶ ।
ପିତାପଣା ପଇଡ଼ ଯେ ବିବିଧ ରସ । ୭୩ ।
ଭୋଜନ ସାରି ବସିଲେ ପଲଙ୍କେ ଯାଇଂ ।
କର୍ପୂର ବିଡ଼ିଆ ଲଗି କରନ୍ତି ନେଇଂ । ୭୪ ।
ଭୋଜରାଜା ନନ୍ଦନ ଯେ ପାଗ୍ଲେଟି ଗଲେ[୪୭] ।
ପଞ୍ଚାମୃତ ଦେଇଣ ବହୁତ ତୋଷିଲେ । ୭୫ ।
କିଛୁ ଦିନ ଅନ୍ତେ ତାକୁ କଲେ ମେଲାଣି ।
ଅଯୁତ ଧନ ବସନ କେ ପାରୁ ଗଣି । ୭୬ ।
ଦାନ୍ତୁଆଣୀ କଟକୁ[୪୫] ଯେ ଯାଇଣ ଥିଲେ ।
ସନମାନ ପାଇ ନିଜ ରାଜ୍ୟକୁ ଗଲେ । ୭୭ ।
ଯେମନ୍ତେଣ ଗୃହେ ଇଚ୍ଛା ନିଜ ରାଜ୍ୟରେ ।
ପିତା ମାତା ଦେଖିଲେ ସେ ଶିଶୁ ନବରେ । ୭୮ ।

---

୪୫ । ଦାନ୍ତୁଆଣୀ କଟକ ହେଲେ ଏହା ବର୍ତ୍ତମାନ 'ଦାନ୍ତନ' ନାମକ ସ୍ଥାନକୁ ବୁଝାଇବ ।

୪୭ । 'ଭୋଜନନ୍ଦନ ଯେ ପାଗ୍ଲେଟି ଯାଇଥିଲେ' ହେଲେ ଅର୍ଥ ଅଧିକ ସ୍ପଷ୍ଟ ହେବ ।

ଦେଖି ପିତା ମାତାଙ୍କର ହୃଦ ପୂରିଲା ।
ବୃଦ୍ଧ ବୃଦ୍ଧ କନ୍ୟାରେ[୪୭] ମୋ ଯେମନ୍ତ ଥିଲା । ୭୯ ।
ଧ୍ରୁବଙ୍କୁ ନୃପତପଣ ଦେଲେ ରାଜନ ।
ନୃପ ଇଚ୍ଛାବତୀ ରାଣୀଙ୍କୁ ବଦ୍ୟମାନ[୪୮] । ୮୦ ।
ଲକ୍ଷେ ଦଳ ନାଭିସ୍ଥଳି[୪୯] କଲେ କୁମର ।
ଦୃପ୍ତ[୫୦] ରାଜା ପଣେ ସେବା କରନ୍ତ ନର । ୮୧ ।
ଇଚ୍ଛାବତୀ କଟେକ[୫୧] ବୋଲଣି ବଦତି ।
ବୃଦ୍ଧ ବୃଦ୍ଧ ରାଜା ରାଣୀ ଭୋଗ ଦୋହିତ । ୮୨ ।
ଯେମନ୍ତ ପ୍ରକାରେ ରାଜା କଲେ[୫୨] ସେ ମିଶି ।
ପୁତ୍ରକୁ[୫୩] ଅଧିକ ସେ ଲୋକଙ୍କୁ ଆଶ୍ୱାସି । ୮୩ ।
ଲକ୍ଷ୍ମୀପତି ମନୋରଥ କଲେ ସମ୍ପୂର୍ଣ୍ଣ ।
ଇଚ୍ଛାବତୀ କୁମର ସବୁରି ଜୀବନ । ୮୪ ।
କମଳାପତି ଚରଣ ପଙ୍କଜ ଧ୍ୟାଇଂ ।
ଇଚ୍ଛାବତୀ ଚରିତ ଗୀତରେ କହଇ । ୮୫ ।
ଇଚ୍ଛାବତୀ ଗୀତ ଯେତୁ ରସିକବାସ,
ସ୍ଥାନମତି ଜଗତେ ମୁଂ କଲି ପ୍ରକାଶ । ୮୬ ।

---

୪୭ । କନ୍ୟାରେ ମୋ (ପୋଥିପାଠ) ।
୪୮ । ଇଚ୍ଛାବତୀ ରାଣୀ ହେଲେ ।
୪୯ । ନାଭିସ୍ଥଳ = ପାଦ ବନ୍ଦନା କରିବା ।
୫୦ । ଦୃପ୍ତରାଜା = ଦୃପ୍ତସ୍ଥ ରାଜା ରୂପେ ।
୫୧ । ଜଟେକ = କଟକ ଶବ୍ଦର ପ୍ରାଚୀନ ଉଚ୍ଚାରଣ ।
୫୨ । 'ମିଶି' ଏହି ଦୁଇଟି ଅକ୍ଷର ପୋଥିରେ ନାହିଁ ।
୫୩ । 'ପୁତ୍ର" ଏହି ଦୁଇଟି ଅକ୍ଷର ମୂଳ ପୋଥିରେ କୀଟ ଦଂଷ୍ଟ ।

ସୁଜନ ପଣ୍ଡିତ ଜନ ରସିକ ସନ୍ତେ ।
ଇଚ୍ଛା ବର୍ଣ୍ଣ ରଚେ ତୋଷ ହୋଇବ ହେତୁ । ୮୭
ନୀଳାଦ୍ରି ପତି ଚରଣ ମୋହର ଶିରେ ।
ବୋଲଇଁ ଗୋବିନ୍ଦ* ସାଦ୍ କରସି ମୋହରେ । ୮୮ ।




*୦ । ଏଠାରେ ଶେଷ ଭଣିତାରେ କବିଙ୍କ ନାମ ନଥିବାରୁ କେହି କେହି 'ଗୋବିନ୍ଦ' ପଦଟିକୁ କବିଙ୍କର ନାମ ବୋଲି ସନ୍ଦେହ କରିପାରନ୍ତି । କିନ୍ତୁ ଅନ୍ୟ ପାଣ୍ଡୁଲିପିର ଶେଷରେ କବି ବନମାଳୀ ନାମ ଭଣିତା ଥିବାରୁ ଏଠାରେ 'ଗୋବିନ୍ଦ' ପଦ ନାରାୟଣଙ୍କ ଅର୍ଥରେ ବ୍ୟବହୃତ ହୋଇଛି ବୋଲି ନିଃସନ୍ଦେହରେ ଧାରଣା କରିବାକୁ ହେବ ।